॥ ଇଚ୍ଛାର ନାମ ପୁଅ ॥

ଗୌରୀବନ୍ଧୁ କର

ପ୍ରକାଶକ :

ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର୍
କଟକ-୨

ପ୍ରଥମ ପ୍ରକାଶ :

୧୯୮୧

ମୁଦ୍ରାକର :

ମେଘଦୂତ ପ୍ରିଣ୍ଟର୍ସ
ଶହୀଦ ନଗର, ଭୁବନେଶ୍ୱର-୭

ପ୍ରଚ୍ଛଦଶିଳ୍ପୀ :

ଶ୍ରୀ ଅସୀମ ବସୁ

ମୂଲ୍ୟ :

ଆଠଟଙ୍କା ମାତ୍ର

# ଭୂମିକା

ଓଡ଼ିଆ ସାହିତ୍ୟରେ ଅନୁବାଦ ବହୁତ କମ୍ । ଅନ୍ୟାନ୍ୟ ରାଜ୍ୟର ଭାଷା ଓ ସାହିତ୍ୟର ଧାରା ଓ ବିକାଶ ସମ୍ବନ୍ଧରେ ଜାଣିବାକୁ ହେଲେ, ତାହାର ଶ୍ରେଷ୍ଠ କୃତିଗୁଡ଼ିକର ଅନୁବାଦ ଏକାନ୍ତ ଅପରିହାର୍ଯ୍ୟ । ୧୯୮୯ ମସିହାରେ ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ପତ୍ରିକା 'ମାନସ'ରେ ପୁସ୍ତକ ଆଲୋଚନା କରିବାକୁ ତାର ସୁଯୋଗ୍ୟ ସମ୍ପାଦକ ଡକ୍ଟର କୃଷ୍ଣପ୍ରସାଦ ମିଶ୍ର ମୋତେ ଶ୍ରୀମତୀ ଶିବଶଙ୍କରୀଙ୍କର ତାମିଲ୍ ଉପନ୍ୟାସ 'ଅଭନ୍ ଅଭଲଅଧୁ'ର ଇଂରାଜୀ ଅନୁବାଦ ପୁସ୍ତକ 'ମେଟାମୋରଫସିସ୍' ଦିଅନ୍ତି । ସେହି ଉପନ୍ୟାସଟିକୁ ପଢ଼ିବା ପରେ ଆଲୋଚନା କରି ତାକୁ ଅନୁବାଦ କରି ମାନସର ପୂଜା ସଂଖ୍ୟାରେ ପ୍ରକାଶ କରିବା ସ୍ଥିର ହୁଏ । ମାତ୍ର ମାନସର ପୂଜାସଂଖ୍ୟା ପ୍ରକାଶିତ ହୋଇପାରେନା । ତା ପରେ 'ମେଟାମୋରଫସିସ୍'କୁ ବହି ଆକାରରେ ପ୍ରକାଶ କରିବାକୁ ମୋର ଇଚ୍ଛା ବଳବତ୍ତର ହୋଇଉଠେ । ସେହି ଇଚ୍ଛାରୁ ଜାତ ହୁଏ "ଇଚ୍ଛାର ନାମ ପୁତ୍ର" ।

ତାମିଲ୍ ସାହିତ୍ୟରେ ଶିବଶଙ୍କରୀ ଏକ ଜଣାଶୁଣା ନାମ । ରାଷ୍ଟ୍ରୀୟତା ଓ ମାନବିକ ଆଦର୍ଶକୁ ମୂଳାଧାର କରି ଯେଉଁମାନେ ତାମିଲ୍ ଉପନ୍ୟାସ ସାହିତ୍ୟକୁ ପୁଷ୍ଟ କରୁଛନ୍ତି ସେମାନଙ୍କ ମଧ୍ୟରେ ଶିବଶଙ୍କରୀ ପ୍ରତିଷ୍ଠିତ ଔପନ୍ୟାସିକା । ନୂତନ ଶୈଳୀ ଓ ଚେତନାରେ ତାଙ୍କର ପ୍ରତ୍ୟେକ ରଚନା ସମୃଦ୍ଧ । ଉପନ୍ୟାସ 'ଇଚ୍ଛାର ନାମ ପୁତ୍ର' ସେହିଭଳି ଏକ ନୂତନ ଚିନ୍ତା ଓ କମନୀୟ ପରିପାଟୀରେ ସଜ୍ଜିତ । ସୁଶିକ୍ଷିତା, ଧନାଢ଼୍ୟା, ଅପରୂପା ଲବଣ୍ୟର ନିଜର ଶାରୀରିକ ଅକ୍ଷମତା ସତ୍ତ୍ୱେ ସନ୍ତାନଟିଏ ପାଇବାର ବଳବତ୍ତର ଇଚ୍ଛାରୁ ସୃଷ୍ଟି ହୋଇଥିବା ସମସ୍ୟା-ଗୁଡ଼ିକରୁ ସମ୍ଭବ ହୋଇଛି ଉପନ୍ୟାସ 'ଇଚ୍ଛାର ନାମ ପୁତ୍ର' । ଏହି ଉପନ୍ୟାସଟି ପ୍ରତ୍ୟେକ ପାଠକ ନିକଟରେ ଚିନ୍ତା ଓ ସମ୍ବେଦନାର ଏକ ନୂତନ ଦିଗ ଉନ୍ମୋଚିତ କରିବାରେ ସାହାଯ୍ୟ କରିବ । ଓଡ଼ିଆ ଉପନ୍ୟାସରେ ଏପରି ବିଷୟବସ୍ତୁ ନେଇ ବୋଧହୁଏ ଏ ଏପର୍ଯ୍ୟନ୍ତ କୌଣସି ଉପନ୍ୟାସ ଲେଖା ଯାଇନାହିଁ । ତାମିଲରେ

କଲୁ ଏହି ଉପନ୍ୟାସକୁ ଭିତ୍ତିକରି ସିନେମା ହୋଇ ବହୁ ଦର୍ଶକର ମନୋରଞ୍ଜନ କରିପାରିଛୁ ।

ଏହି ଅନୁବାଦ ପୁସ୍ତକଟି ମୋର ପ୍ରଥମ ପୁସ୍ତକ । ଏ ପୁସ୍ତକଟିକୁ ଅନୁବାଦ କରିବାର ପ୍ରେରଣାର ଉତ୍ସ ଡକ୍ଟର କୃଷ୍ଣପ୍ରସାଦ ମିଶ୍ର ମୋର ସାହିତ୍ୟିକ ଜୀବନର ସ୍ରଷ୍ଟା । ଯେଉଁ ଅନ୍ୟାନ୍ୟ ବନ୍ଧୁମାନଙ୍କର ପ୍ରେରଣା ମୋର ସ୍ମୃତିରେ ସାଇତା ରହିବ ସେମାନେ ହେଲେ ଡକ୍ଟର ନୃସିଂହ ଚରଣ ପଣ୍ଡା, ଡକ୍ଟର ଗଣେଶ୍ୱର ମିଶ୍ର, ଶ୍ରୀ ଏନ୍. କିଷ୍ଟସ୍ୱାମୀ, ଶ୍ରୀ ବୈକୁଣ୍ଠନାଥ ରାଉତ, ମୋର ସହକର୍ମୀ ସିନତା ମିଶ୍ର ଓ ପ୍ରଖ୍ୟାତ ଶିଳ୍ପୀ ଶ୍ରୀ ଅସୀମ ବସୁ । ତାମିଲ ଉପନ୍ୟାସଟିର ଇଂରାଜୀ ଅନୁବାଦ କରି ଡକ୍ଟର କିଷ୍ଟା ଶ୍ରୀନିବାସ୍ ମୋର ଓଡ଼ିଆ ରୂପାୟନରେ ଅଶେଷ ସାହାଯ୍ୟ କରିଛନ୍ତି ।

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରର ସତ୍ତ୍ୱାଧିକାରୀ ପୂଜ୍ୟ ଶ୍ରୀଯୁକ୍ତ ଅନନ୍ତ ମିଶ୍ର ଏହାର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ତାଙ୍କୁ ମୋର ବିନମ୍ର କୃତଜ୍ଞତା ଜ୍ଞାପନ କରୁଛି ।

**ସୌରୀବନ୍ଧୁ କର**

କାନାରା ବ୍ୟାଙ୍କ
ଭୁବନେଶ୍ୱର

# ଇଚ୍ଛାର ନାମ ପୁଷ୍ପ

ଲାବଣ୍ୟ ହାତ ଘଡ଼ିକୁ ଚାହିଁଲା । ବର୍ତ୍ତମାନ ସମୟ ୫ଟା ୧୫ । ଧମୁ ଆଉ ପନ୍ଦର ମିନିଟ୍ ପରେ ଆସି ପହଞ୍ଚିବ । ସେ ପ୍ରାୟ ଠିକ୍ ସମୟରେ ଆସେ ।

ଅରଗଣ୍ଡିର ଧଳା ଶାଢ଼ୀ—ତା ସହିତ ସେହି ରଙ୍ଗର ବ୍ଲାଉଜ୍ । ମୁକ୍ତାର କାନଫୁଲ । ବେଶୀ କିଛି ଆଖିଦୃଶିଆ ପ୍ରସାଧନ ନୁହେଁ । କଳା ଟୋପାଟିଏ କପାଳ ଉପରେ । ଓଠଟି ଈଷତ୍ ଲାଲ । ବାଳ ବବ୍‌କରା, ରବର ବ୍ୟାଣ୍ଡ୍‌ଟି ଝୁଲି ପଡ଼ିଥିବା ବାଳଗୁଡ଼ିକୁ ଏକାଠି ଧରି ରଖିଛି । ଟିକିଏ ସେଣ୍ଟ୍‌ର ମହକ ; ହାତରେ ହ୍ୟାଣ୍ଡ୍-ବ୍ୟାଗ୍‌ଟି ଧରି ବାହାରି ପଡ଼ିଲା ସେ । ବାତାନୁକୂଳ ଘରଟିରୁ ବାହାରିବା ପୂର୍ବରୁ ତା'ର ମୁଖମଣ୍ଡଳରୁ ଝାଳ ଟୋପା ଟୋପା ଖସି ପଡ଼ୁଥିଲା । ସେ ବାରଣ୍ଡାକୁ ଆସି ଦୋଳିରେ ବସିପଡ଼ିଲା । "ମୁଁ ଚୌକିଟାକୁ ନେଇ ବଗିଚାରେ ପକାଇ ଦେବି କି ?" ମାଳୀଟି ପାଣିଦେବାର ହୋସ୍‌ଟିକୁ ଅଟ୍ରେକରି ତଳେ ରଖି ପଚାରିଲା ।
"ନା, ମୁଁ ତ ବର୍ତ୍ତମାନ ବାହାରକୁ ଯାଉଛି ।"
ମାଳୀ ଚାଲିଗଲା ।

"ବାହାରକୁ ଯାଉଛ ? ମୁଁ ତୁମପାଇଁ କଫି ଆଣିବି କି ?" ତା' ସାମନାକୁ ଚାଲିଆସି ଆପ୍ପୁ ପଚାରିଲା ।

କୋଡ଼ିଏ ବର୍ଷ ପୂର୍ବେ ଆପ୍ପୁ ତାଙ୍କର ଘରବାରକୁ ଆସିଥିଲା । ତା'ର ବାପା କୈଳାଶଙ୍କର ଅଜସ୍ର ଅର୍ଥ ଉପାର୍ଜନ ଏବଂ ତତ୍‌ସହିତ ବ୍ୟବସାୟର ବ୍ୟାପକ ବିସ୍ତାର ତା'ର ଆଖି ଆଗରେ ଗଢ଼ି ଉଠିଛି ।

ତାକୁ ଯେତେବେଳେ ପାଞ୍ଚବର୍ଷ, ସେତେବେଳେ ସେ ଘରେ ପୂଜାଘ୍ର ଷ୍ଟବରେ ଯୋଗ ଦେଇଥିଲ । ଆପ୍ପୁ ନିଜକୁ କୈଳାଶଙ୍କ ପରିବାରର ସୁଖ ଦୁଃଖରେ ମିଶାଇ ଦେଇଥିଲ । ସ୍ତ୍ରୀଙ୍କର ବିୟୋଗ ହେବାପରେ କୈଳାଶ ଆଉ ବିବାହ କରି ନ ଥିଲେ । ତେଣୁ ଲବଣ୍ୟର ଲାଳନପାଳନର ଦାୟିତ୍ୱ ପଡ଼ିଥିଲା ଆପ୍ପୁ ଉପରେ । ଲବଣ୍ୟ ଏହା ଭିତରେ ସ୍ୱମଙ୍କୁ ବିବାହ କରିଥିଲା ଏବଂ ଗଲବର୍ଷ ବିମାନ ଦୁର୍ଘଟଣାରେ କୈଳାଶଙ୍କର ମୃତ୍ୟୁ, ଏ ସବୁ ଘଟଣା ଆପ୍ପୁ ସାମନାରେ ଘଟି ଯାଇଥିଲା ।

"ଏଇଲେ କଫି ପିଇବାକୁ ଇଚ୍ଛାନାହିଁ । କେବଳ ଗିଲାସେ ଥଣ୍ଡାପାଣି ଆଣି ଦେ ।" ଆପ୍ପୁ ପାଣି ଆଣିଦେଲା ।

ଧମୁର ଅମ୍ବାସାଡ଼ାର୍ କାର୍ ଆସୁଥିବାର ଦେଖି, ଲଭ ପୋର୍ଟିକୋ ପାଖକୁ ପାହାଚ ଦେଇ ଓହ୍ଲାଇ ଆସିଥିଲା ।

କାର୍ ବ୍ରେକ୍ ଦେଲା ।

"ଅଃ...ତୁମେ କେତେ ସୁନ୍ଦର ଦେଖାଯାଉଛ !" ଧମୁର ଏ ପ୍ରକାର ମନ୍ତବ୍ୟ ଲବଣ୍ୟକୁ ବେଶ୍ ଭଲ ଲଗିଲା ।

ସେ ଯାଇ କାର୍‌ରେ ବସିବାମାତ୍ରେ କାର୍ ଚାଲିବାକୁ ଆରମ୍ଭ କରିଦେଲା । ମନୋରମ ଉଦ୍ୟାନ ଭିତର ଦେଇ ସେମାନେ ସମୁଦ୍ର କୂଳରେ ଥିବା ହୋଟେଲ ଆଡ଼କୁ ଅଗେଇଲେ । ଗୋଟିଏ ବିଶାଳ ଗଛର ଶାଗୁଆ ଛାଇତଳେ କାର୍‌ଟିକୁ ରଖିଦେଇ ହୋଟେଲ୍ ପିଲାକୁ କିଛି ଆଣିବାକୁ ଧମୁ ବରାଦ ଦେଲା ।

"ତାହାହେଲେ...... ।" ଲବଣ୍ୟ ପ୍ରଥମେ କଥା ଆରମ୍ଭ କଲା ।

ଧମୁ ତା' ମୁହଁକୁ ଚାହିଁ ରହିଥିଲା ଏବଂ ଆଶ୍ଚର୍ଯ୍ୟ ହେଉଥିଲା କଥା କହିବାରେ ତା'ର ଅସ୍ୱାଭାବିକତାକୁ ଲକ୍ଷ୍ୟ କରି ।

"ଲଭ ! ଗତ ଦୁଇ ଦିନ ଧରି ମୁଁ କେବଳ ତୋ'ର କହିଥିବା କଥାକୁ ହିଁ ଭାବି ଚାଲିଛି । ପ୍ରଥମେ ଭାବୁଥିଲି, ଏହା ନିତାନ୍ତ ଅସମ୍ଭବ । ମାତ୍ର ବହୁ ଚିନ୍ତା ପରେ, ମୁଁ ତୋର ଭାବନାର ସୂତ୍ର ଖୋଜି ପାଇଲି । ତୁ ସାଧାରଣ ସ୍ତ୍ରୀମାନଙ୍କ ପରି ନୁହଁ,

ଏହା ମୁଁ ଜାଣେ । ତୁ ଅସାଧାରଣ । ତରୁର ତା ସହିତ ଭବଚନ୍ଦ୍ର ରୁ ହରୁବେଳେ ଯାହାହେଲେ କାର୍ଯ୍ୟ କରୁ । ତେଣୁ ମୁଁ ଗତକାଲ ତୋର ଯାହାଇଚ୍ଛା, ତାକୁ ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରିବା ପାଇଁ ଠିକ୍ କଲି । ତୋ ବୁଦ୍ଧି ଓ ବିବେକ ଉପରେ ମୋର ସବୁବେଳେ ବିଶ୍ୱାସ ରହିଛି ।''

ଲବଣ୍ୟ ଇଚ୍ଛା ହସିଲା ।

ହୋଟେଲ ବାଳକଟି ଟ୍ରେ ଆଣି କାର୍ ପାଖରେ ରଖିଲା । ଧମୁ ନିଜ ହାତରେ ଗୋଟିଏ କପ୍ ଧରି ଅନ୍ୟଟିକୁ ବଢ଼ାଇ ଦେଲା ଲବଣ୍ୟ ହାତକୁ ।

"ତୁ କହୁଥିବା ଅନୁଯାୟୀ ମୋ ନଜରରେ ଗୋଟିଏ ଝିଅ ଅଛି । ଆମେ ତା ସହିତ କଥାବାର୍ତ୍ତା କରି ତା'ର ମତାମତ ଆଣି ନେବା ।''

ସମୁଦ୍ରର ନୀଳ ଲହଡ଼ି କୂଳରେ ଆସି ପିଟି ହେଉଥିଲା । ଦୁଇଟି ପିଲା ଏକାଠି ଖେଳରେ ମାତିଛନ୍ତି । ପୁଅ ଝିଅ ଦୁଇଜଣ ସମୁଦ୍ର ଆଡ଼କୁ ଏକ ଲୟରେ ଚାହିଁଛନ୍ତି । ଚାରିଜଣ ଦୋଳରେ ବସି ଝୁଲୁଛନ୍ତି । ଅଙ୍କିଆ ପିଲାଟିକୁ ଟାଣି ଟାଣି ଅଣିବା ସମୟରେ ସେ ଜୋରରେ କାନ୍ଦୁ ଛାଡ଼ୁଛି । ସେ ସବୁକୁ ଦେଖି ଦେଖି ଲବଣ୍ୟ କହିଲା—

"ଦୟାକରି କହିଚାଲ ।'' ସମୁଦ୍ର ଦଗରୁ ଦୃଷ୍ଟି ଫେରାଇ ଧମୁକୁ ଚାହିଁଲା । ଧମୁ ତା ମନର ସ୍ଥିରତା ଓ ସମସ୍ୟାକୁ ସମ୍ମୁଖୀନ ହେବାର ଧୈର୍ଯ୍ୟକୁ ମନେ ମନେ ପ୍ରଶଂସା କରୁଥିଲା ।

"ଝିଅଟିର ନାମ ମେନକା । ଟାଇ ଡାକ୍ତର ହେବାର ଟ୍ରେନିଂରେ ସେ ସହରକୁ ଚାଲି ଆସିଛି ଏବଂ ବର୍ତ୍ତମାନ ଫିଲ୍ମରେ ଛୋଟିଆ ଛୋଟିଆ ରୋଲ୍ କରୁଛି । ସେ ସୁବତୀ ଓ ବୁଦ୍ଧିମତୀ ମଧ୍ୟ ।

ମୁଁ ମେନକାକୁ ଗତ ଦୁଇ ବର୍ଷ ଧରି ଜାଣେ । ତା'ରରୂପ ଲବଣ୍ୟ ଯେ କୌଣସି ଲୋକର ମନକୁ ଆକର୍ଷଣ କରିବ । ମୋର "ଆକାର ଭାରତ'' ଫିଲ୍ମରେ ସେ ନର୍ତ୍ତକୀର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା—ଯେପରି କୌଣସି ମନ୍ଦିରର ପଥର ମୂର୍ତ୍ତିଟିଏ ଜୀବନ୍ତ ହୋଇଯାଇଛି । ସେଇ ଝିଅଟି । ତୁମେ ତାକୁ ଦେଖିଛ ।''

"ହଁ", ଲବଣ୍ୟର ସିନେମାରେ ଦେଖିଥିବା ନର୍ତ୍ତକୀଙ୍କର ରୂପ ମନେପଡ଼ିଲା । ଯୁବତୀମାନଙ୍କ ମଧ୍ୟରେ ସେ ଏକ ଅତ୍ୟାଶ୍ଚର୍ଯ୍ୟ, ସରୁ ସରୁ କଟିବନ୍ଧନୀ, ଆକର୍ଷଣୀୟ ପାଦ ଯୁଗଳ, ଅସ୍ଥିର ସ୍ତନଦ୍ୱୟ । ସୁନ୍ଦରୀ, ବାସ୍ତବିକ ଅନନ୍ୟରୂପା । ଖୁବ୍ ଭଲ । ଅତି ଉତ୍ତମ । ଧମୁ ତାର ସମ୍ମତିରେ ଖୁସି ହେଲ ।

"ମୁଁ କେବଳ ତୋର କାମପାଇଁ ମେନକା ହିଁ ଠିକ୍ ହେବ ବୋଲି ଭାବୁଛି । ମନ୍ଦରର ଉଲଗ୍ନ ପ୍ରତିମାଗୁଡ଼ିକ ପରି ଏକ ସୁନ୍ଦରୀ ଝିଅକୁ ନର୍ତ୍ତକୀର ରୋଲ୍ ନେବାପାଇଁ ମୁଁ ଖୋଜୁଥିଲି । ହଠାତ୍ ତାକୁ ଦେଖି, ତା'ର ମତାମତ ଶୁଣି ମୁଁ ସ୍ତମ୍ଭୀଭୂତ ହୋଇଗଲି । ତା'ର ପ୍ରଗତିଶୀଳ ଦୃଷ୍ଟିକୋଣ ମୋତେ ଚକିତ କରିଥିଲା । ଫିଲ୍ମରେ ସେହି ନର୍ତ୍ତକୀ ରୋଲ୍ ପାଇଁ ତା'ର ସମସ୍ତ ଶରୀରକୁ ଗହଣାରେ ଛପାଇଦେବାକୁ ଇଚ୍ଛା କରିଥିଲି ମାତ୍ର ସେ ନମ୍ରଭାବରେ ପଚାରିଲେ, "ବାସ୍ତବିକତା ସୃଷ୍ଟି କରିବାପାଇଁ, ନମ୍ନ ସ୍ତ୍ରୀ ଉଲଗ୍ନ ଭାବରେ ଠିଆ ହେଲେ କ୍ଷତି କ'ଣ ? ଉଲଗ୍ନ ହେବାପାଇଁ ମୋର କୌଣସି ସଙ୍କୋଚ ନାହିଁ ।"

ମୁଁ ରାଜି ହେଲି ।

ତାକୁ ମଡେଲ୍ ଭାବରେ ମୁଁ ଜାଣେ । ତା' ବିଷୟରେ ବେଶୀ କିଛି କହିପାରିବିନି । କିନ୍ତୁ ମୁଁ ଭାବୁଛି ଯଦି କେହି ଝିଅ ତୋ କାମପାଇଁ ରାଜି ହୁଅନ୍ତି, ତେବେ କେବଳ ସେହି ହେବ । ଯଦି ତୁ ଚାହୁଁ, ତେବେ ମୁଁ ତାକୁ କହିବ । ତୋର ମତ କ'ଣ ? ଲବଣ୍ୟ ନିଜର ଚିନ୍ତା ମଧ୍ୟରେ ନିଜକୁ ହଜାଇ ଦେଇଥିଲି ।

ସେ ନିଜ ମାନସଚକ୍ଷୁରେ ମେନକାକୁ ଦେଖିବାକୁ ଲାଗିଥିଲି । ଝିଅଟି ଯୁବତୀ । ସୁନ୍ଦରୀ···ନର୍ତ୍ତକୀ···ଉତ୍ତମ । ତା'ର ଶିକ୍ଷା ଦୀକ୍ଷା କ'ଣ ? ତା'ର ଜନ୍ମସ୍ଥାନ କେଉଁଠି । ତା'ର ଆତ୍ମୀୟ କେହି ଅଛି ? ସେ ଧମୁକୁ ପଚାରିଲା । "ଲବଣ୍ୟ, ମୁଁ ଏ ବିଷୟରେ କିଛି ଜାଣେନି । ମାତ୍ର ଟିକିଏ ଅପେକ୍ଷା କର । ସେ ଇଂରାଜୀ ଭଲ ଭାବରେ କହିପାରେ; ତେଣୁ ମୁଁ ନିଶ୍ଚିତ ସେ ଅଶିକ୍ଷିତା ନୁହେଁ । ସେ ଭଲ ଇଂରାଜୀ କହେ···ଏବଂ ସାହସିନୀ ମଧ୍ୟ । ଆମର ଆଉ ଅଧିକ କ'ଣ ଦରକାର ?"

ହୋଟେଲ ବୟ୍ କଫିର ଦାମ ମାଗିବାକୁ ଆସିଲା । ଖାକି ପୋଷାକ ପିନ୍ଧିଥିବା ବୟ୍ଟି କଫି ଟ୍ରେକୁ ନେଇ ଚାଲିଯାଇଥିଲା ।

ନୀରବ ହୋଇ, ଲାବଣ୍ୟ ଭାବି ଚାଲିଥିଲା ମେନକା ବିଷୟରେ ।

"ଠିକ୍ ଅଛି, ଧମୁ । ତା'ର ରହିବା ଜାଗା ଜାଣୁ ?"

"ନା ମାତ୍ର ତା'ର ଠିକଣା ଜଣାଅଛି ।"

"ବର୍ତ୍ତମାନ ସେ ସେଠାରେ ଥିବ କି ?"

"କହି ହେଉନି, ଯଦି କେଉଁଠାରେ ସୁଟିଂ ନଥାଏ, ତେବେ ହୁଏତ ସେ ଥାଇପାରେ ।"

"ଠିକ୍ ଅଛି । ଗାଡ଼ି ଚଳ । ସେଠାକୁ ଯାଇ ଦେଖିବା ।"

ଧମୁ ହସିଲା, "ତର ତର କାହିଁକି ? ଆଉ କେତେଦିନ ଅପେକ୍ଷା କରି ପାରୁନି । ରାମ ବମ୍ବେରୁ ଫେରିଆସୁ । ତା' ସହିତ ଆଲୋଚନା ପରେ···।"

"ନା, ନା ଧମୁ ମୁଁ ଗତ କେତେ ମାସ ଧରି ଏ ବିଷୟରେ ଭାବୁଛି । ଆଉ ବିଳମ୍ବ କରି କୌଣସି ଲାଭ ହେବନାହିଁ । ବରଂ ଆଉ ବେଶୀ ଭାବିଲେ ମୋ ମୁଣ୍ଡ ଖରାପ ହୋଇଯିବ । ମୁଁ ଏ କାମପାଇଁ ସଂକଳ୍ପବଦ୍ଧ । ବର୍ତ୍ତମାନ କୌଣସି କଥା ରାମକୁ କହିବା ଉଚିତ୍ ମନେକରୁନି । ପ୍ରଥମେ ଏଇ ଝିଅ ସହ କଥାବାର୍ତ୍ତା କରିବା । ଯଦି ସେ ରାଜିହୁଏ, ଭଲ···ନଚେତ୍ ଏ କାମକୁ ଏଇଠି ଛାଡ଼ି ଦେବାକୁ ହେବ । ପ୍ରଥମେ ମୁଁ ଚେଷ୍ଟା କରିବାକୁ ଇଚ୍ଛା କରେ । ଦୟାକରି ମୋତେ ଏଥିରେ ବାଧା ଦିଅନା ।"

କ୍ଷଣକେ ପାଇଁ ଧମୁ ଅନ୍ୟମନସ୍କ ହୋଇପଡ଼ିଲା । ଇଞ୍ଜିନ୍ ଷ୍ଟାର୍ଟ କଲା । କିନ୍ତୁ ପର ମୁହୂର୍ତ୍ତରେ ଗାଡ଼ି ଷ୍ଟାର୍ଟ କରିବା ବନ୍ଦକରି ଅତି କୁଣ୍ଠିତ ଭାବରେ ପଚାରିଲେ, "ଲଭି; ରାମକୁ ନ ପଚାରି ଏ କାର୍ଯ୍ୟରେ ଅଗ୍ରସର ହେବା ଭଲ ହେବନି । ସେ ତୋତେ ଠିକ୍ ବୁଝିବଟି ? ଆମେ ତା' ମନରେ ଯେପରି ଆଘାତ ନ ଦେଉ ।"

ଲାବଣ୍ୟ ଉତ୍ତେଜିତ ହେବାପରି ଦେଖାଗଲା । "ତୁମେ କ'ଣ ଭାବୁଛ ମୁଁ ତାଙ୍କୁ ଆଘାତ ଦେବାକୁ ଚେଷ୍ଟା କରୁଛି । ମୁଁ କ'ଣ ତାଙ୍କୁ ଭଲ ପାଏନି ?"

"ଏହା ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । ଏ ବିଷୟରେ ସେ ବିଶେଷ ଭାବରେ ଜଡ଼ିତ । ତେଣୁ ମୁଁ ଭାବୁଥିଲି, ତା' ସହିତ ଏ ବିଷୟରେ ନିଶ୍ଚିତ ପରାମର୍ଶ ଆବଶ୍ୟକ ।"

"ମୁଁ ଜାଣେ ତା'ଙ୍କୁ କପରି ବୁଝାଇବି; ମୋ କଥାରେ ହଁ କରାଇବି । ସେ ଏକ ଅଦ୍ଭୁତ ସ୍ୱାମୀ । ସେ ନିଶ୍ଚିତ ଭାବରେ ସମ୍ମତ ହେବେ ଯଦି ମୁଁ ଏ କଥାଟା ଠିକ୍ ଭାବରେ ତାଙ୍କ ଆଗରେ ଉପସ୍ଥାପିତ କରେ…ତେବେ ଏହା ଏକ କଷ୍ଟକର ବ୍ୟାପାର, ମୁଁ ଜାଣେ ।"

ଧମୁ ତା'ର ପଙ୍କଜ ସମ୍ପର୍କରେ ସଚେତନ । ସେ ଗାଡ଼ିରେ ଷ୍ଟାର୍ଟ ଦେଇ ଅନ୍ୟ ଗାଡ଼ିଗୁଡ଼ିକୁ ଅତିକ୍ରମ କରି ରାସ୍ତାରେ ଦହଣ୍ଡିଲ ।

"ତୁମେ ଠିକ୍ କହୁଛ । ରାମ ଦୃଢ଼ମନା, ନିର୍ଭୀକ ଓ ଚିନ୍ତାଶୀଳ ସ୍ୱାମୀ । ତାଙ୍କ ନିକଟରେ ଆବେଗ ନୀତିବାଦ । ମାତ୍ର ସେ ଅନୁଭବ ପ୍ରତି ଉଦାସୀନ ନୁହେଁ । ତାଙ୍କୁ କୌଣସି ଚିନ୍ତା ବ୍ୟସ୍ତ କରେନ ।" କନ୍ତୁ ? "ଛାଡ଼,ତୁ ପଙ୍କଜବାବୁ । ମୁଁ ତୋ କାର୍ଯ୍ୟରେ ବାଧା ସୃଷ୍ଟି କରିବାକୁ ଚାହେଁନ । ଲଭ; ମୁଁ ତୋର ଶୁଭକାମନା କରୁଛି । ଚାଲ ଯାଇ ମେନକାକୁ ଦେଖିବା ।"

କେମିନ ଚୌକ ଦେଇ ଗହଳିଆ ରାସ୍ତାରେ ହର୍ଣ୍ଣ ମାରି ମାରି ଗାଡ଼ି କୋଡ଼ାମ୍ବକମ୍ ଅଭିମୁଖେ ମୁହାଁଇଲା ।

କନ୍ତୁ ଲବଣ୍ୟର ମନ ଆନ୍ଦୋଳିତ ହେଉଥିଲା । କାରଣ ସେ ତା ସ୍ୱାମୀର ସମ୍ମତି ନନେଇ ଅଦ୍ଭୁତ କଥାଟିଏ, ନାହିଁ ନଥିବା କଥାଟିଏ କରିବାକୁ ଯାଉଥିଲା । ମନରେ ତା'ର ନାନା ପ୍ରକାର ଭୟ । ସତରେ କ'ଣ କାମଟି ତା ମନ ମୁତାବକ ଆଗେଇ ପାରିବ ।

ଆଃ, ବହୁତ କିଛି କରିବାକୁ ଅଛି ।
ପ୍ରଥମେ ମେନକାକୁ ଦେଖିବାକୁ ହେବ । ସେ ମୋର ମନପସନ୍ଦ ହେବ ଓ ସେ ତା'ର ସମ୍ମତି ଏ କାମ ପାଇଁ ଦେବ । ବହୁତ କିଛି କରିବାକୁ ହେବ । ଯଦି ସବୁ ଠିକ୍ ଭାବରେ ହୁଏ, ତେବେ ଯାଇ ରାମର ସମ୍ମତି । କାହିଁକି ପ୍ରଥମରୁ କଳ୍ପନା କରି ପରେ ତାଙ୍କୁ କହିବ ? ଏଥିରେ ରାମ ବେଶୀ ବିରକ୍ତ ହୁଏ । ମୁଁ ପ୍ରସ୍ତୁତ…କନ୍ତୁ ହଁ ବା ନାଁ । କହିବା ତାଙ୍କର କାମ । ଠିକ୍ ଅଛି; ପ୍ରଥମେ ମେନକାକୁ ଦେଖାଯାଉ । ମୋ ମନକୁ ସ୍ଥିରକରେ…ଆଃ; ସତରେ କେତେ କାମ କରିବାକୁ ହେବ ।

ତଥ୍ୟ ଠିକ୍ ହେବାପରେ, ରାମଙ୍କୁ କୁହାଯାଇପାରେ । ସେ ନିଶ୍ଚିତ ଖୁସି ହେବେ ।
ମୋ ରାମ କେବେହେଲେ ମୋ କଥାରୁ ବାହାର ନୁହନ୍ତି । ରାମ...ମୁଁ ତୁମକୁ
ଭଲପାଏ...ରାମ...ଯେହେତୁ ମୁଁ ତୁମକୁ ଜୀବନଠୁ ବେଶୀ ପ୍ରେମ କରେ; ଏ
କାର୍ଯ୍ୟରେ ହାତ ଦେଇଛି...। ତୁମେ ସତରେ ଏହା ବୁଝିବନି, ରାମ, ମୋର
ପ୍ରିୟତମ ?

× × ×

ଲବଣ୍ୟ ପ୍ରଥମେ ରାମକୁ ଭେଟିଥିଲା ତାର ସ୍ନାତକୋତ୍ତର ପଢ଼ାର ଶେଷ ବର୍ଷରେ ।
ତାର ବାପା କୈଳାଶବାବୁ ତାକୁ ମେଡ଼ିକାଲ୍ କୋର୍ସରେ ଯୋଗଦେବାକୁ
ମନାକରନ୍ତି । "ଦୀର୍ଘ ଛଅ ବର୍ଷ...ସ୍ୱାମୀ ଓ ପିଲାଙ୍କ ଖବର ବୁଝିବୁନି । ମୁଁ ଜାଣେ
ଏହା ଏକ ମାନବିକ କାର୍ଯ୍ୟ । ତଥାପି ? ନା,ନା, ଲଭି, ତୁ ଶୀଘ୍ର ବାହା ହୋଇପଡ଼
ଏବଂ ମୁଁ ବୁଢ଼ା ହେଲେ ମୋ ଘରପାଖରେ ନାତି ଓ ନାତୁଣୀ ବୁଲନ୍ତୁ, ସେମାନଙ୍କ ସହ
ଖେଳିବାକୁ ମୋର ଇଚ୍ଛା ।" ସେ ବାଧାଦେଇ କହିଲେ ।

"ବାପା; ଦୟାକରି ମୋତେ ମେଡ଼ିକାଲ୍ କଲେଜରେ ଯୋଗଦେବାକୁ ଅନୁମତି
ଦିଅନ୍ତୁନା ।"

"ଲଭି; ମୋତେ କ୍ଷମାକର; ଉପଯୁକ୍ତ ବରଟିଏ ଖୋଜିବା ପାଇଁ ମୋତେ
ଅନୁମତି ଦେ ।"

ଉଭୟେ ପରସ୍ପରର କଥା ଶୁଣି ହସିବାକୁ ଲାଗିଲେ ।

ଅବଶେଷରେ ଲଭି ତା'ର ସମ୍ମତି ଦେଇଥିଲା ।

ସେ ବି.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇ ବିଶ୍ୱବିଦ୍ୟାଳୟରେ ସ୍ଥାନ ଅଧିକାର
କରିଥିଲା ! ତା'ପରେ ସେ ଯୋଗଦିଏ ସ୍ନାତକୋତ୍ତର ଶ୍ରେଣୀରେ ।

କୈଳାଶବାବୁ ତାଙ୍କ କମ୍ପାନୀର ଜଣେ ଅଫିସର ରାମ ପ୍ରତି ବେଶ୍ ଆକୃଷ୍ଟ ହୋଇ
ପଡ଼ିଥିଲେ । ତାଙ୍କ କମ୍ପାନୀରେ ରାମ ଯୋଗ ଦେଇଥାଏ ମାର୍କେଟିଂ କନ୍‌ସଲଟାଣ୍ଟ
ଭାବରେ । ତା'ର ସ୍ୱଭାବ, କଥାବାର୍ତ୍ତା ଓ କାର୍ଯ୍ୟଦକ୍ଷତାରେ ମୁଗ୍ଧ ହୁଅନ୍ତି
କୈଳାଶବାବୁ ।

ସେ ଗୃହୁଁ ଥିଲେ ଲବଣ୍ୟ ଘ୍ରମକୁ ଦେଖି । ତାଙ୍କର ଇଚ୍ଛା ସରଷ୍ଟରେ ପରଷ୍ଟରକୁ ଜାଣନ୍ତୁ । ତାଙ୍କର ସୁଚଳ୍ପିତ ଯୋଜନା ସେ ଆରମ୍ଭ କରିଦେଲେ ।

"ଘ୍ରମ ବଡ଼ ମେଧାବୀ ।" ହଠାତ୍ ସେ ଦିନେ ଲବଣ୍ୟକୁ କହିଲେ ।

ଆଉ ଦିନେ । ଉଭୟ ଚା' ପିଇବାରେ ବ୍ୟସ୍ତ ।

"ଘ୍ରମର ଉପଦେଶଗୁଡ଼ିକ ତତ୍ପରତା ସମ୍ପନ୍ନ ଏବଂ ଲଭଦାୟକ । ବୁଝିଲୁ ଲଭି; ସେ ବଡ଼ ବୁଦ୍ଧିମାନ ।

ସେ ଶ୍ରମିକ ସମସ୍ୟାକୁ ଠିକ୍ ଭବରେ ସମାଧାନ କରେ । ସେମାନଙ୍କର ପ୍ରକୃତ ଆବଶ୍ୟକତା ଉପରେ ଗୁରୁତ୍ୱ ଦିଏ । ତାକୁ ଶ୍ରମିକ ଶ୍ରେଣୀର ମନୋବିଜ୍ଞାନ ବେଶ୍ ଜାଲୁମ । ମନ୍ଦ ହେବନି ।" ସେ କଥାରେ ଗୁରୁତ୍ୱ ଦେଇ କହିଲେ । "ବହୁତ ଲୋକ ଟଙ୍କାପାଇଁ କାମକୁ ଘୃଣଭଲ କରନ୍ତି । ମାତ୍ର ମୁଁ ଖୁସି, ଘ୍ରମ ତାର ଏକ ବ୍ୟତିକ୍ରମ । ଜୀବନରେ ତା'ର ଉନ୍ନତି ହେବ ଏଥିରେ ମୁଁ ସ୍ଥିର ନିଶ୍ଚିତ । ତୁ ଦିନେ ଦେଖିବୁ ସେ କେତେ ଉପରକୁ ଯିବ ।" ଆଉ ଦିନେ ସେ କହିଲେ ।

ଲଭି ଜାଣେ, କାହାକୁ ଏତେ ପ୍ରଶଂସା କରିବା ତା' ବାପାଙ୍କର ଅଭ୍ୟାସ ନୁହେଁ । ଯଦିଓ ସେ ଏ କଥାକୁ ଆଗ ଆଗ ଗୁରୁତ୍ୱ ଦେଉ ନ ଥିଲା; ମାତ୍ର କ୍ରମଶଃ ତା' ମନରେ ଘ୍ରମକୁ ଦେଖିବାର ଇଚ୍ଛା ସୃଷ୍ଟି ହୋଇଥିଲା । ପ୍ରାୟ କଲେଜ ଫେରନ୍ତି ସେ ସିଧା ଘରକୁ ଆସେ, ବାପାଙ୍କ ଅଫିସ୍ ଆଡ଼େ କେବେ ଯାଏନି । କୈଳାଶବାବୁ ତାକୁ ବାରମ୍ବାର ଫେରିବା ବାଟରେ ଅଫିସ ଆସିବାକୁ କହିଥାନ୍ତି । ସେ ଦିନ ମଧ୍ୟ ଅଫିସ୍ ବାଟଦେଇ ଆସିବାକୁ ଅନୁରୋଧ କରନ୍ତି କୈଳାଶବାବୁ । କଲେଜ ସରିଯିବା ପରେ ସନ୍ଧ୍ୟା ୪ଟା ବେଳକୁ ଲବଣ୍ୟ ହାଜର ହୋଇଗଲା ବାପାଙ୍କ ପାଖରେ ।

କେତେକ ଗୁରୁତ୍ୱପୂର୍ଣ୍ଣ କାଗଜପତ୍ର ମାଲିକଙ୍କୁ ଦେଖାଇବା ପାଇଁ ଘ୍ରମ ସେ ସମୟରେ ସେଠାରେ ଉପସ୍ଥିତ ଥାଏ ।

ହୁଏତ କୈଳାଶବାବୁଙ୍କର ଏହା ଥିଲା ପୂର୍ବ ପରିକଳ୍ପିତ ଯେ ଦୁହେଁ ସେଠାରେ ଭେଟ ହୁଅନ୍ତୁ ।

ଲଭ ଏ ପର୍ଯ୍ୟନ୍ତ ବାପାଙ୍କ ମୁହଁରୁ ସୁମର ପ୍ରଶଂସା ଶୁଣିଥାଏ ମାତ୍ର ତାକୁ ଦେଖି ନ ଥାଏ । ସୁମକୁ ଦେଖି ସେ ଯେପରି ହୋଇପଡ଼ିଲା ବାକ୍‌ଶୂନ୍ୟ ।

ଖୁବ୍ ଡେଙ୍ଗା ।

ଅନ୍ତତଃ ପକ୍ଷେ ଛଅ ଫୁଟ ଦୁଇ ଇଞ୍ଚ ?···ହଁ···

ପ୍ରଶସ୍ତ କାନ୍ଧ । ନିଶ୍ଚିତ ରୂପେ ଖେଳୁଆଡ଼ ।

ହେ ଭଗବାନ···ସେ ଏତେ ସୁନ୍ଦର ହଟେ । କୌଣସି ସିନେମା ତାରକା ମଧ୍ୟ ହାର ହେବେନି । ଭାଗ୍ୟରେ ଥିଲେ କୌଣସି ସ୍ତ୍ରୀ ଏପରି ପୁରୁଷକୁ ସ୍ୱାମୀ କରିଥାଏ ।

କୌଣସି ଔପଚାରିକତା ନକରି କୈଳାଶବାବୁ ଦୁହିଁଙ୍କୁ ଦୁହିଁଙ୍କର ପରିଚୟ କରାଇ ଦେଇଥିଲେ ।

ଯଦିଓ ଛଅ ମାସ ତଳୁ କୈଳାଶବାବୁ ସୁମକୁ ତାଙ୍କର ଜୋଇଁ କରିବେ ବୋଲି ସ୍ଥିର କରିଥିଲେ, ଝିଅର ଚନ୍ଦ୍ରାଧାର ସମ୍ପର୍କରେ ଜାଣି ନ ଥିବାରୁ ସେ ବଡ଼ ସ୍ନେହରେ ସମ୍ପୂର୍ଣ୍ଣ ଅବଗତ ହେବାପାଇଁ ଏ ଯାଏଁ ଅପେକ୍ଷା କରିଥିଲେ । କାରଣ ଲଭ ଏକ ଭିନ୍ନ ପ୍ରକୃତର ଝିଅ ।

ପରିଷ୍କାର ଭାବନା, କ୍ଷମାଶୀଳା···ତା ବୟସ ଝିଅଙ୍କଠୁ ଢେର ଆଗରେ । ସେ ବେଶୀ କଥାବାର୍ତ୍ତା କରେନା । କିନ୍ତୁ କାହା ସହ ଘନିଷ୍ଠତା ହେଲେ ସେ ପ୍ରଗଳ୍ଭ ହୋଇଯାଏ; ତା' ପାଖରେ ହୃଦୟ ଖୋଲିଦିଏ ।

ସେ ନିଜେ ପ୍ରତ୍ୟେକ କଥା ସ୍ଥିର କରେ । ଏହାହିଁ ଦରକାର । ଏହା ଆବଶ୍ୟକ, ଆବଶ୍ୟକ ନୁହେଁ, ଏହା ଦରକାରୀ, ଦରକାରୀ ନୁହେଁ—ପ୍ରଥମେ ତା' ମନକୁ ସୁମର ବ୍ୟକ୍ତିତ୍ୱ ଛୁଇଁବା ଆବଶ୍ୟକ ଏବଂ ତା'ପରେ କେବଳ, ସେ ସିଦ୍ଧାନ୍ତ ଦେବ । ଥରେ କୌଣସି କାର୍ଯ୍ୟରେ ହାତଦେଲେ, ସେ ସଫଳତା ଲାଭ ନ କରିବା ପର୍ଯ୍ୟନ୍ତ ମଝି ବାଟରେ ଅଟକି ସିବନାହିଁ ।

ସ୍ଥିର ସିଦ୍ଧାନ୍ତ, ମାନସିକ ସ୍ଥିରତା, କାର୍ଯ୍ୟ ନୈପୁଣ୍ୟ—ତା' ଭିତରେ ଏ ଚନ୍ଦ୍ରାଧାର ତାକୁ କୋଟିକରେ ଗୋଟିଏ କରି ଗଢ଼ି ତୋଳିଛି ।

ଅଯଥା ହସିବା ବା କନ୍ଦିବା ?···ନା, କେବେ ନୁହେଁ ।

କେବଳ ଟିକିଏ ସ୍ମିତ ହାସ···ଯେ ହସ ପ୍ରତ୍ୟେକ ମନକୁ ଛୁଏଁ, ହୃଦୟକୁ ଜୟ କରେ ।

ଲଭି ସବୁବେଳେ କଲେଜରେ ପ୍ରଥମ । ଟେନିସ୍ ଖେଳରେ ଚମ୍ପିୟାନ୍, ସନ୍ତରଣ, ଘୋଡ଼ାଚଢ଼ା, ପର୍ବତାରୋହଣ···ସେ ସବୁଥିରେ ପାରଙ୍ଗମ । ସୁହାଣୀର ମନଲୋଭା ଆକର୍ଷଣ ହାସକୁ ଅମାପ ଧନର ଅଧିକାରିଣୀ ହୋଇ ତା'ର ନାରୀ ଜୀବନର ପୂର୍ଣ୍ଣ-ବିକାଶ ଘଟିଛି । କୈଳାଶବାବୁଙ୍କ ମତରେ ଲଭି ହେଉଛି ସାହସିନୀ ସିଂହୀ । ତା'ର ବୟସ ବଢ଼ିବା ସଙ୍ଗେ ସଙ୍ଗେ ତା' ପାଇଁ ଜଣେ ସମାନସ୍ତର ସଙ୍ଗୀ, ଏକ ପୁରୁଷ ସିଂହ ପ୍ରୟୋଜନ । ତା' ପାଇଁ ସର୍ବଗୁଣରେ ପରିପୂର୍ଣ୍ଣ ବରଟିଏ ଖୋଜନ୍ତି କୈଳାଶବାବୁ ଏବଂ ଏହି ସମୟରେ ତାଙ୍କର ଆଖି ରାମ ଉପରେ ପଡେ ।

ରାମ ସହ ତାଙ୍କର ବ୍ୟବସାୟିକ ଘନିଷ୍ଠତା ବଢ଼ିଥିବାବେଳେ, ତା' ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ତାକୁ ଜୋଇଁ ଭାବରେ ପାଇବାକୁ ଲାଳାୟିତ ହୋଇପଡ଼ନ୍ତି ସେ ।

କିନ୍ତୁ କି ଲଭି ସେ ନିଜେ ଇଚ୍ଛାକରେ ?

ଲାବଣ୍ୟ ପୁରୁଷମାନଙ୍କ ମଧ୍ୟରେ ଏକ ପୁରୁଷ ସିଂହକୁ ଦେଖିବା ଦରକାର । ସେ ତ କାହାର କଥା ଶୁଣେନା । କୈଳାଶବାବୁ ଚିନ୍ତାକଲେ ଏବଂ ଶେଷଶେଷରେ, ଦୁଇ ଜଣଙ୍କର ଦେଖାସାକ୍ଷାତ କରାଇ ଦେବାହିଁ ତାଙ୍କର କାର୍ଯ୍ୟ ହେଲା । ସେ ଲଭି ସହିତ ରାମର ବ୍ୟବହାର, ଚରିତ୍ର ଓ ଖେଳ କସରତ ସମ୍ବନ୍ଧରେ କଥାବାର୍ତ୍ତା କରି ନ ଥିଲେ । ଲାବଣ୍ୟ ତା' ବାପାଙ୍କ ଯୋଜନା ବିଷୟରେ ଜାଣିବାର କୌଣସି ଅବକାଶ ମଧ୍ୟ ନଥିଲା ।

ସେ ଦେଖିବାକୁ ଆସିଥିଲା ସେଇ ଲୋକଟିକୁ ଯେ ତା' ବାପାଙ୍କର ହୃଦୟକୁ ଜୟ କରିଛି । ମାତ୍ର ପ୍ରଥମ ସାକ୍ଷାତରୁ ସେ ଯେପରି ତା'ର ପ୍ରେମରେ ପଡ଼ିଗଲା—ତା'ର ସୁହାଣୀରେ ବାନ୍ଧି ହୋଇଗଲା ଏବଂ ତା'ର ଉପସ୍ଥିତିରେ ନିଜକୁ ଭୁଲିଗଲା ।

ପ୍ରଥମ ସାକ୍ଷାତରେ ଉଭୟେ ଉଭୟଙ୍କୁ ଭଲ ପାଇବାର ବନ୍ଧନରେ ବାନ୍ଧିହୋଇ

ପଢ଼ିବାର ସବୁଠିକ ସହେତ । କୈଳାଶବାବୁ ସବୁ ବୁଝିପାରି ଦିନେ ସକାଳ ବେଳାର ଭିନ ତାଙ୍କ ଘରେ ଟେନିସ୍ ଖେଳିବାକୁ ନିମନ୍ତ୍ରଣ କଲେ ରାମକୁ ।

ରାମ ଠିକ୍ ସମୟରେ ଆସି ଉପସ୍ଥିତ ହୁଏ ।

ଏକ ସୁନ୍ଦରୀ, ବୁଦ୍ଧିମତୀ ଓ ଧନାଢ୍ୟ ଯୁବତୀ ସହିତ ଟେନିସ୍ ଖେଳରେ ପ୍ରଥମ ଥର ପାଇଁ ମୁହାଁମୁହିଁ ହୋଇ ମଧ୍ୟ ରାମ ଅତ୍ୟନ୍ତ ଶାନ୍ତଭାବରେ ଖେଳିବାକୁ ଲାଗିଲା ଓ ଖେଳରେ ବିଜୟ ହାସଲ କଲା । ସବୁଜ ଘାସର ମନୋରମ ଲନ୍‌ରେ ବ୍ରେକ୍‌ଫାଷ୍ଟ ଖାଇବାବେଳେ ସେ ତା'ର ଏମ୍.ଏ. ପାଠପଢ଼ା,ଦେଶର ସାମ୍ପ୍ରତିକ ରାଜନୀତି ଇତ୍ୟାଦି ସମ୍ପର୍କରେ ମାପିଚୁପି ଆଲୋଚନା କରେ ।-ସାଧାରଣତଃ ଯେ କେହି ଯୁବକ ଲକ୍ଷ୍ମୀର ଉପସ୍ଥିତିରେ ନିଜକୁ ହଜାଇ ଦେଇ ବାକ୍‌ଶୂନ୍ୟ ହୋଇପଡ଼ନ୍ତି ଅଥବା ବନ୍ଧୁତ୍ୱକୁ ନିବିଡ଼ କରିବା ନିର୍ଲଜ୍ଜ ଭାବେ ପ୍ରସ୍ତାବ ଦିଅନ୍ତି, "ଏ ସନ୍ଧ୍ୟାକୁ ସିନେମା ଦେଖି ଉପଭୋଗ କଲେ କପରି ହୁଅନ୍ତା !" ବା ଗୁଲଗୁନା; କାର୍‌ରେ ବସି ସମୁଦ୍ର କୂଳରେ ହାଓ୍ୱା ଖାଇବା ଇତ୍ୟାଦି । ମାତ୍ର ରାମ ଅନ୍ୟମାନଙ୍କଠୁ ସମ୍ପୂର୍ଣ୍ଣ ବିପରୀତ । ତାର କୌଣସି କଥାରେ ଅଧୀରତା ନଥିଲା ।

ସେଦିନ ରାତିରେ ଲକ୍ଷ୍ମୀ କହେ ତା'ର ବାପାଙ୍କୁ, "ତୁମର ରାମ ବାସ୍ତବିକ ଚତୁର ।" ତେବେ ବାଲମ୍ବ କାହିଁକି?

ଏହିପରି ଭାବରେ ଆରମ୍ଭ ହୁଏ ।

ରାମ ପ୍ରତ୍ୟେକ ଦିନ ଟେନିସ୍ ଖେଳିବାକୁ ଆସେ; ତା'ର ସମସ୍ତ ଧ୍ୟାନ ଓ ଧାରଣାକୁ ନିଜ ଉପରେ ନିବଦ୍ଧ କରିବାକୁ ଲାବଣ୍ୟ ଚେଷ୍ଟା କରେ । ସେତେବେଳେ ତା'ର ବାପା ଥା'ନ୍ତି ସିନ୍ଦୁରା ବାଡରେ । କୈଳାଶବାବୁ ସେଠାକୁ ଯାଇ ବିବାହର ଆୟୋଜନ କରୁଥାନ୍ତି ।

ଏବଂ କୌଣସି ଏକ ଶୁଭ ଦିନରେ ଲାବଣ୍ୟ ଶ୍ରୀମତୀ ରାମରେ ପରିବର୍ତ୍ତିତ ହୁଏ ଏବଂ ରାମ ହୁଏ କମ୍ପାନୀର ମ୍ୟାନେଜିଂ ଡ଼ାଇରେକ୍ଟର ।

× × ×

ହଠାତ୍ ଲାବଣ୍ୟ ପେଟରେ ଯନ୍ତ୍ରଣା ଅନୁଭବ କରେ । ସାମାନ୍ୟ ପୀଡ଼ା ଯୋଗୁ ସେ ଆଦୌ ବିବ୍ରତ ହୁଏନା । କିନ୍ତୁ ବେଳବୁଡ଼କୁ ହଠାତ୍ ରକ୍ତସ୍ରାବ । ସେ ଆଶ୍ଚର୍ଯ୍ୟ

ହେଲା, ତା'ର ଋତୁସ୍ରାବ ତାରିଖ ସେ ପର୍ଯ୍ୟନ୍ତ ହୋଇ ନ ଥାଏ । ନିଜ ଡାଏରି ଖୋଲି ଦେଖେ ! ଗତ ମାସ ଋତୁସ୍ରାବ ହୋଇଥାଏ ସତର ତାରିଖରେ ; ଆଜି ପନ୍ଦର ତାରିଖ । କୋଡ଼ିଏ ଦିନ ବହୁତ କମ୍ । ସାଧାରଣତଃ ତା' ନିଜର ଏହା ବ୍ୟତିକ୍ରମ । ସେ ଭାବିଲା; ବିବାହ ହେତୁ ସ୍ତ୍ରୀ ମାନଙ୍କର ବିବାହିତ ଜୀବନରେ ଏପରି ଘଟିଥାଏ ।

ସେତିକରେ ସେ କଥାକୁ ବନ୍ଦକରିଖି ଆଉ କୌଣସି ଚିନ୍ତା କଲାନି ।

ତା' ପରମାସ । ଏଥର ସମସ୍ତ ଅ.ନ୍ଥର କମିଗଲା । ସତର ଦିନରେ । ସେ ବିଶେଷ ବିବ୍ରତ ହୋଇପଡ଼ିଲା । ଦଶଦିନ ଧରି ରକ୍ତସ୍ରାବ ଆଦୌ ବନ୍ଦ ହେଲାନି ।

ତାର ପୃଷ୍ଠଭାଗରେ ଓ କଟିଭାଗିରେ ପୀଡ଼ା ବଢ଼ିବାକୁ ଲାଗିଲା । ଏ ଯନ୍ତ୍ରଣାକୁ ସହ୍ୟ କରି ନ ପାରି ସେ ରାମକୁ ଓ ତାର ବାପାଙ୍କୁ କହିଥିଲା ।

ଗତ ମାସରେ ତୋର ଏକଥା କହିବା ଉଚିତ ଥିଲା । ବର୍ତ୍ତମାନ ଯାଇଁ ଡାକ୍ତରଙ୍କ ସହ ପରାମର୍ଶ କର—କୈଳାଶବାବୁ କହିଲେ ।

ରାମ ହୋଇପଡ଼ିଲା ଅତ୍ୟନ୍ତ ବିବ୍ରତ ।

ତା'ର ବନ୍ଧୁ ରମାର ଭଉଣୀ ଡାକ୍ତର ସୁଶୀଳାକୁ ସେ ଫୋନ୍ କଲା ।

ଡାକ୍ତର ସୁଶୀଳା ଓ ତାର ଡାକ୍ତର ସ୍ୱାମୀ ଦୀର୍ଘ ଦଶ ବର୍ଷ ଧରି ଲଣ୍ଡନରେ ପ୍ରାକ୍ଟିସ୍ କରୁଥିଲେ । ସୁଶୀଳା ସ୍ତ୍ରୀରୋଗ ବିଶେଷଜ୍ଞ । ଯେହେତୁ ସେ ଦୁହେଁ ତାଙ୍କର ଝିଅଙ୍କୁ ବିଦେଶରେ ବଢ଼ାଇବାକୁ ଚାହୁଁ ନ ଥିଲେ, ତେଣୁ ସେମାନେ ଫେରି ଆସିଥିଲେ ଭାରତକୁ ।

ଦୁଇ ବର୍ଷ ଭିତରେ ତାଙ୍କର ପ୍ରାକ୍ଟିସ୍ ବହୁତ ବଢ଼ିଗଲା ନୁଗାମ୍ବକମ୍‌ଠାରେ ଏକ ସୁରମ୍ୟ ଅଟ୍ଟାଳିକା ଏବଂ ତାର ପାଖରେ ଏକ ଅତ୍ୟାଧୁନିକ ନର୍ସିଂ ହୋମ କରି ବର୍ତ୍ତମାନ ଏଠାରେ ଅବସ୍ଥିତ ।

ନିର୍ଦ୍ଦିଷ୍ଟ ସମୟରେ ଲାବଣ୍ୟ ଡାକ୍ତରଙ୍କ ପାଖରେ ପହଞ୍ଚିଲା ।

—ହ୍ୟାଲୋ, ଲାଭି ! କେମିତି ଅଛୁ ? ଘଟଣା କ'ଣ ? କିଛି ଖୁସି ଖବର ?

ସେମାନେ ପୂର୍ବରୁ ଲାବଣ୍ୟକୁ ଜାଣନ୍ତି । ରମା ତା'ର ସ୍ୱାମୀ ସହିତ ନାଇଜେରିଆରେ ରହିବାବେଳେ । ମୁଁ ତୋତେ ତୋ ବାହାଘରବେଳେ ଦେଖିଥିଲି । ବୋଧହୁଏ ସାତ ମାସ ହେବ । ନୁହେଁ କି ? ବର୍ତ୍ତମାନ କହ, ଆସିବାର କାରଣ କ'ଣ ?

ଡାକ୍ତର ଲାବଣ୍ୟ ଠାରୁ ଖୁସି ଖବର ଆଶା କରୁଥିଲେ । ମାତ୍ର ଲାବଣ୍ୟ କଥା ଶୁଣିବାମାତ୍ରେ ତାଙ୍କର ମନଟି ଶୁଖିଗଲା ।

"ମୁଁ ଖୁବ ଦୁଃଖିତ । ଯେହେତୁ ତୋର ରୂପ ଟିକିଏ ବଦଳି ଯାଇଛି; ମୁଁ ଭାବିଲି ବୋଧହୁଏ ତୁ ଗର୍ଭବତୀ । ଠିକ୍ ଅଛି । ଟେବୁଲ ଉପରେ ଚିତ୍ ହୋଇ ଶୋଇପଡ଼, ମୁଁ ପରୀକ୍ଷା କରେ ।"

ପରୀକ୍ଷା ନିରୀକ୍ଷା ସରିବା ବେଳକୁ ଡାକ୍ତର ବିବ୍ରତ ଜଣା ପଡ଼ୁଥିଲେ ।

"ତୋର ବର୍ତ୍ତମାନ କ'ଣ ହୋଇଛି ; ମୁଁ ଠିକ୍ ଭାବରେ କହି ପାରୁନି । ତୋତେ କେତେଗୁଡ଼ିଏ ବଟିକା ଦେଉଛି । ତାକୁ କିଛିଦିନ ଖାଆ । ଆସନ୍ତା ଋତୁସ୍ରାବ ବେଳକୁ ପୁଣି ଥରେ ପରୀକ୍ଷା କରିବା ।"

ଲଭି ଡାକ୍ତରଙ୍କ ଉପଦେଶ ଅନୁଯାୟୀ କାର୍ଯ୍ୟ କଲା । ଦୁଇଦିନ ଭିତରେ ତା'ର ଯନ୍ତ୍ରଣା କ୍ରମଶଃ ଉପଶମ ହେବାକୁ ଲାଗିଲା ।

ତା' ପର ମାସ ବ୍ୟବହାରିକ କାର୍ଯ୍ୟରେ ରାମ ପୁନା ଓ ରାଜସ୍ଥାନ ଯିବାବେଳେ ଲାବଣ୍ୟକୁ ସାଙ୍ଗରେ ନେଇଗଲା । ପ୍ରାୟ କୋଡ଼ିଏ ଦିନ ଅତି ଆନନ୍ଦରେ ସେମାନଙ୍କର କଟିଗଲା । ଆଉ ଦଶଦିନ ଯିବା ପରେ ହଠାତ୍ ରୋଗକଥା ତା' ମନରେ ପଡ଼ିଯିବାରୁ ସେ କ୍ୟାଲେଣ୍ଡର ଦେଖିଲା ।

ପଇଁଚାଳିଶ ଦିନ ଗଡ଼ିଗଲାଣି । ସେ କ'ଣ ତାହାହେଲେ ଗର୍ଭବତୀ ? ସେଦିନ ରାତିରେ ଦମ୍ପତିଙ୍କ ମନରେ କି ଅସୀମ ଆନନ୍ଦ । ସେମାନେ ବାପାଙ୍କୁ ଖବର ଦେବାକୁ ଚାହୁଁଥିଲେ ମାତ୍ର ଡାକ୍ତରଙ୍କଠାରୁ ଏହାର ସତ୍ୟାସତ୍ୟ ନିରୂପଣ କରିବା ପରେ କହିବା ଠିକ୍ ମନେ କଲେ ।

ଏହାର ଠିକ୍ ତିନିଦିନ ପରେ···ହଠାତ୍ ଲଭି ତା'ର ତଳପେଟରେ ଅସହ୍ୟ ଯନ୍ତ୍ରଣା ଅନୁଭବ କଲା । ତା'ର ପେଟ ଜୋର ହୋଇ ଯାଉଥିଲା ଯେପରି । ଅସୁବିଧା କେଉଁଠି ? ପୁଣି କ'ଣ ଅନ୍ୟ କିଛି ରୋଗ ? ପନ୍ଦର ମିନଟ୍ ପରେ ପୁଣି ନିଦାରୁଣ ପୀଡ଼ା । ସେ ରାମକୁ ଟେଲିଫୋନ୍ କଲା । ତା'ର ଦେହ ହାତ ଥରୁଥିଲା । କୈଳାଶ-

ବାବୁ ଓ ରାମ ଦଣମିନଟ ମଧ୍ୟରେ ପହଞ୍ଚିଲେ । ସେମାନେ ପହଞ୍ଚିଥିବେ ଲବଣ୍ୟର ଭୟଙ୍କର ବାନ୍ତି ; ଆଖି ଆଗରେ ତା'ର ଅନ୍ଧାର ଘୋଟିଗଲା···ଓଠ ଶୁଖିଗଲା··· । ସେ ଦୁଃଖ ଓ ଯନ୍ତ୍ରଣାରେ ଚିତ୍କାର କରୁଥାଏ ।

ସେମାନେ ତାକୁ ଡାକ୍ତର ସୁଶୀଳାଙ୍କ ନର୍ସିଂହୋମକୁ ନେଇଗଲେ । ତାକୁ ଜରୁରୀ-କାଳୀନ କକ୍ଷକୁ ନିଆଗଲା ।

ଅପରେସନ୍ ପୂର୍ବରୁ ଡାକ୍ତର ଘୋଷଣା କଲେ, "ରୋଗିର ସହିତ ସନ୍ନିଷ୍ଟ ପେଟ ଭିତର ଥଳୀଟିରେ କ୍ଷତ ହୋଇଛି । ମୁଁ ତାକୁ ଅପରେସନ୍ କରିବି ଓ ଯେଉଁ ଅଂଶଟି କ୍ଷତଗ୍ରସ୍ତ ତାକୁ କାଟି ବାହାର କରିବାକୁ ହେବ । ସବୁ ଭଲ ହେବ ବୋଲି ଆଶା କରାଯାଉ ।"

ଅପରେସନ୍ ଆରମ୍ଭ ହେବା ମାତ୍ରେ ଡାକ୍ତର ଚମକି ପଡ଼ିଲେ । ଓଭରିର ଦୁଇ କଡ଼ରେ କେବଳ ନୁହେଁ, ଅନ୍ୟ ଓଭରିଟିରେ ମଧ୍ୟ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ସିଷ୍ଟ୍ । ଯଦି ଦୁଇଟିଯାକ ଓଭରି ନଷ୍ଟ ହୋଇଥାଏ ; ତେବେ ଭବିଷ୍ୟତରେ ଗର୍ଭଧାରଣ ସମ୍ପୂର୍ଣ୍ଣ-ରୂପେ ଅସମ୍ଭବ । ହେ ଭଗବାନ !

ଯେଉଁ ଓଭରିଟି ସମ୍ପୂର୍ଣ୍ଣ କ୍ଷତଗ୍ରସ୍ତ ହୋଇଥିଲା, ତାକୁ କାଟି ସେ ବାହାର କରି-ଦେଲେ । ତା'ପରେ ବାହାରକୁ ଆସି ରାମକୁ ଅନ୍ୟ ଓଭରି କଥା କହି ବିପଦ ସମ୍ପର୍କରେ ସୂଚନା ଦେଲେ ।

ରାମ କ'ଣ ବା କହନ୍ତା ?

"ଲଭି ଛଡ଼ା ମୁଁ ଆଉ କିଛି ଚାହୁଁନାହିଁ ।" ଅପରେସନ୍ ପାଇଁ ରାମ ଦେଲା ତା'ର ସମ୍ମତି ।

ଦୁଇଘଣ୍ଟା ପରେ ଅପରେସନ୍ ସରିଗଲା । ଡାକ୍ତର ରାମକୁ ସିଷ୍ଟ୍‌ମାନଙ୍କର ଦ୍ରୁତ ବିକାଶ ସମ୍ବନ୍ଧରେ ବୁଝାଇଲେ ।

"ଏଭଳି ଲକ୍ଷଣ ଦେଖି ଆମେ ବହୁତ ରୋଗୀଙ୍କୁ ଆଗେ ଆଗେ ଅପରେସନ୍ କରିଛୁ । ମାତ୍ର ଲଭିଠାରେ ଏହାର ବିକାଶ ହଠାତ୍ ଓ କ୍ଷିପ୍ର । ବାସ୍ତବିକ ଏହା

ଅନ୍ୟାନ୍ୟ ଦୁଃଖର ବିଷୟ । ହଜାରେକରେ ଗୋଟେ ଆମେ ଏଭଳି ରୋଗୀ ଦେଖୁ । ବର୍ତ୍ତମାନ ତୁମର ସାହସ କେବଳ ତା'ର ବଞ୍ଚିବାର ଟନିକ୍ ।"

"ମୋର ଗୋଟିଏ ଅନୁରୋଧ ଡାକ୍ତର । ଏ ବିଷୟରେ ଯେପରି ମୋର ଶ୍ୱଶୁର କିଛି ନ ଜାଣନ୍ତୁ । ମୁଁ ସୁବିଧା ଦେଖି ଲିଭିକୁ ଏ ବିଷୟ ପରେ କହିବି । ଆମେ ତିନିଜଣ କେବଳ ଏ ବିଷୟ ଜାଣିବା ।" ରାମ ଡାକ୍ତରଙ୍କୁ ଅନୁରୋଧ କରିଥିଲା । ଡାକ୍ତର ଏହା ବୁଝିଥିଲେ । ଲାବଣ୍ୟର ମାତୃତ୍ୱ ବିଷୟରେ ସମସ୍ତ ସତ୍ୟାସତ୍ୟ ଏହି ତିନିଜଣଙ୍କ ଭିତରେ ସୀମାବଦ୍ଧ ରହିଲା ।

ଅପରେସନ୍ ର ଠିକ୍ ଚାରିମାସ ପରେ । ଦିନେ ରାତିରେ ଲାବଣ୍ୟ ନିଜ ମନକୁ ସ୍ଥିର କରି ରାମକୁ କିଛି ପଚାରିବାକୁ ଇଚ୍ଛା କଲା ।

ରାତ୍ରିଭୋଜନ ସରି ଯାଇଥିଲା । ସେ ଦୁହେଁ ଉପର ମହଲାର ଶୋଇବା ଘରେ ଥିଲେ ।

"ମୁଁ ତୁମକୁ କିଛି ପଚାରିବାକୁ ଚାହେଁ ।" ଲିଭି କହିଲା ।

ଷ୍ଟିରିଓରୁ ଭାସି ଆସୁଥିବା ଇଂରାଜୀ ସଙ୍ଗୀତର ମଧୁର ମୂର୍ଚ୍ଛନାକୁ ରାମ ଟିକିଏ କମାଇ ଦେଇ, ଲାବଣ୍ୟକୁ କୋଳକୁ ନେଇ ପଚାରିଲା, "ପଚାର !"

"ମୋ କଥା ଶୁଣି ସାରିଲା ପରେ, ମନରେ ଦୁଃଖ କରିବନି ବା ରାଗିବନି । ପ୍ରଥମେ ମନ ଦେଇ ଶୁଣ । ଆଉ ମୋତେ ତୁମେ ବୁଝିବାକୁ ଚେଷ୍ଟା କରିବ । କ'ଣ କହୁଛ ?"

କଥାର ଉପସ୍ଥାପନା ଓ ଭୂମିକାରେ ରାମ ଆନନ୍ଦ ଉପଭୋଗ କରୁଥିଲା । ସେ ଜାଣିଥିଲା ଲିଭି ଯାହା କହିବାକୁ ଯାଉଛି, ତହିଁରେ ନିଶ୍ଚିତ ରୂପେ କିଛି ଗୁରୁତ୍ୱ ଅଛି ; ତେଣୁ ସେ ଏକ ସ୍ମିତ ହସରେଖା ଟାଣି ଲିଭିକୁ ଚୁମାଟିଏ ଦେଇ କହିବାକୁ ଅନୁମତି ଦେଲା ।

"ତୁମେ ମୋତେ କାହିଁକି ଛାଡ଼ପତ୍ର ଦେଇ ଆଉ ଗୋଟିଏ ବାହା ହେଉନ ? ସମସ୍ତେ ସନ୍ତାନ ଆଶା କରନ୍ତି ; ତୁମର ମଧ୍ୟ ନିଶ୍ଚୟ କାମନା ଥିବା ସ୍ୱାଭାବିକ । ମୋର

ଅକ୍ଷମତା ହେତୁ ତୁମେ କାହିଁକି ନିଜକୁ କଷ୍ଟ ଦେବ ? ମୋତେ ତୁମେ ମନକଥା ଖୋଲିକରି କୁହ ; ମୁଁ ସବୁକିଛି ବୁଝି ପାରିବ ।" ଲବଣ୍ୟର କଣ୍ଠ ଦୁଃଖରେ ଅବରୋଧ ହୋଇ ପଡ଼ିଥିଲା । ଓଠରୁ ବାକ୍ୟ ଫୁଟୁ ନ ଥିଲା । ଲୋତକର ବନ୍ୟା ଭାସି ଚାଲିଥିଲା ତା' ଆଖି ଦୁଇଟିରୁ । ସୁନ୍ଦର ମୁଖମଣ୍ଡଳଟି ଲୋତକରେ ସିକ୍ତ ହୋଇ ଯାଇଥିଲା ।

ରାମ ତାକୁ ନିଜର ବାହୁପାଶରୁ ଅଲଗା କରିଦେଇ, ଘର ଭିତରେ ବାରମ୍ବାର ଏପାଖ ସେପାଖ ପଦଚାରଣ କରିବାକୁ ଲାଗିଲା । ସେ ବିଚଳିତ ହୋଇଯାଇ ଧୀର ସ୍ୱରରେ କହିଲା, "ତୁ କ'ଣ ମୋତେ ସବୁ ସାଧାରଣ ଲୋକଙ୍କ ପରି ଜଣେ ବୋଲି ଭାବିଛୁ ? କିଭଳି ଭାବରେ ତୁ ମୋତେ ଏଭଳି କଥା କହି ପାରିଲୁ ?"

ତୋ ଅପେକ୍ଷା ସନ୍ତାନ କ'ଣ ମୋ ପାଇଁ ବେଶୀ ମୂଲ୍ୟବାନ ? ତୁ କ'ଣ ଜାଣୁନା ଜଣେ ବିଚାରଶୀଳା ବୁଦ୍ଧିମତୀ ସ୍ତ୍ରୀ ଲାଭକରି ମୁଁ କେତେ ଖୁସି ଓ ଆନନ୍ଦିତ ? ମୋର ସନ୍ତାନରେ ଆବଶ୍ୟକ ନାହିଁ । ତୋ ସହିତ ମୁଁ ବେଶ୍ ଖୁସିରେ ଅଛି । ମୁଁ ସନ୍ତୁଷ୍ଟ । ଯାହା ଆମ ଭାଗ୍ୟରେ ନାହିଁ, ସେଥିପାଇଁ ଆମେ କାହିଁକି ଭାବିବା ? କୌଣସି ଗୋଟିଏ ଜିନିଷ ପ୍ରତି ଆସକ୍ତ ହେଲେ, ଆମେ କେବେ ଶାନ୍ତିରେ ରହି ପାରିବାନି । ଆମେ ଆମର ଆବେଗକୁ ନିୟନ୍ତ୍ରଣ କରି ରଖିବା ଉଚିତ । ଆବେଗ ଆମକୁ ଯେପରି ନିୟନ୍ତ୍ରଣ ନ କରୁ । ହେ ମୋର ପ୍ରିୟତମା, ଏହି ମୁହୂର୍ତ୍ତରୁ ଏ ଆଲୋଚନା ବନ୍ଦ ରହୁ । ମୁଁ ଏ ବିଷୟର ପରିସମାପ୍ତି ଏଇଠି ଘଟିଲା ବୋଲି ଆଶା କରୁଛି ।"

ସେ ଲବଣ୍ୟକୁ ଆଲିଙ୍ଗନ କରି ତାକୁ ସାନ୍ତ୍ୱନା ଦେଲା ; ଆଖିରୁ ତା'ର ବହି ଚାଲିଥିବା ଲୁହଧାରକୁ ପୋଛି ଦେଇ ମୁଣ୍ଡକୁ ଆସ୍ତେ ଆସ୍ତେ ଆଉଁସି ଦେଲା ।

ରାମର ପ୍ରେମ ଯୋଗୁଁ ସେହି ମୁହୂର୍ତ୍ତରେ ଲବଣ୍ୟ ମନରେ ଗଭୀର ଶାନ୍ତି ଆସିଥିଲା । ମାତ୍ର ଘରେ ପରେ ହୃଦୟରେ ଦୁଃଖର ଆଗ୍ନେୟଗିରି ଉତ୍‌କ୍ଷିପ୍ତ ହୋଇ ଫାଟି ପଡ଼ିବାକୁ ଅପେକ୍ଷା କରି ରହିଥିଲା ଯେପରି ।

ତିନିବର୍ଷ ଗତ ହୋଇ ଯାଇଥିଲା । ବିମାନ ଦୁର୍ଘଟଣାରେ ତା'. ପିତାଙ୍କର ମୃତ୍ୟୁ ପୂର୍ବରୁ ସେ କେତେଥର ତାଙ୍କୁ ମିଛ ନ କହିଛି ।

ଗୋଟିଏ ଗର୍ଭାଧାନ ନଷ୍ଟ ହୋଇଗଲା । ଆଉ ଗୋଟିଏ ତ ଅଛି । ତା'ର ବାପା, ଶ୍ୱଶୁର, ଶାଶୁ ସମସ୍ତେ କହନ୍ତି..."ତୋର କ'ଣ ପିଲାଟିଏ ପାଇବାକୁ ମନ ହେଉନ ? ...ଏକଲା କାହିଁକି କରୁନୁ ? ...କେବେ ତୁ ଆମକୁ ନାତି ନାତୁଣୀ ସହିତ ଖେଳିବାକୁ ସୁଯୋଗ ଦେବୁ ?" ...ସେ କେବଳ ହସି ହସି ସେମାନଙ୍କ କଥାକୁ ଏଡ଼ାଇ ଦେଉଥିଲା ।

"ଏତେ ବ୍ୟସ୍ତ କାହିଁକି ? ଜୀବନକୁ ଆଉ କେତେଦିନ ମନଭରି ଉପଭୋଗ କରିଯାଉ ।" ସେ ସେମାନଙ୍କୁ କହିଦିଏ ।

"ଏତେଦିନ ? ମାତ୍ର ତିନିବର୍ଷ...ଆଉ ଦୁଇବର୍ଷ ଯାଉ...।"

"ଆସନ୍ତା ବର୍ଷ ଆମେ ପୃଥିବୀ ଭ୍ରମଣରେ ଯାଉଛୁ; ତେଣୁ ସେ ଜଞ୍ଜାଳରୁ ଅତ୍ୟନ୍ତ ପକ୍ଷେ ମୁକ୍ତ ରହିବାକୁ ଚାହୁଁ ।" ସେ ନିହାତି ହସି ହସି ଏକଥା ସେମାନଙ୍କୁ କହି ଦିଏ ।

କିନ୍ତୁ ସେହି ଦୁଃଖଦାୟକ ଘଟଣା ଲାଗି କେବେ ଆଶା କରି ନ ଥିଲା । କୋଟିନ କେତେ ନିକଟରେ । ସେଠାରୁ ତା' ବାପା ଫେରିବା ପୂର୍ବରୁ, ତାଙ୍କର ଜୀବନଦୀପ ହଠାତ୍ ଲିଭିଗଲା ।

ସେ ଗୋଟିଏ ଦିନ ପାଇଁ କାର୍ଯ୍ୟରେ ଯାଇଥିଲେ । ମାତ୍ର ତା' ପରଦିନ ବିମାନ ଦୁର୍ଘଟଣାର ଖବର ପହଞ୍ଚିଲା, ଦୁର୍ଘଟଣାରେ ବିମାନଟି ସମ୍ପୂର୍ଣ୍ଣ ପୋଡ଼ି ପାଉଁଶ ହୋଇ ଯାଇଥିଲା ।

ତା ବାପାଙ୍କର ଶେଷକଥା ଥିଲା କେବଳ ନାତି ନାତୁଣୀ । ଯାତ୍ରା ପୂର୍ବର କଥାବାର୍ତ୍ତା ଥିଲା ନାତି ନାତୁଣୀଙ୍କୁ ନେଇ !

"ମୁଁ ତୋର ଖୁଡ଼ୀଙ୍କୁ ଦେଖିବାକୁ କୋଚିନ୍ ଯାଉଛି । ଲିଭ, ଗତଥର ମୁଁ ସେଠାରେ ଯେତେବେଳେ ଥିଲି; ସେ ମୋତେ ପଚାରିଲେ—ବାହାଘର ପରେ ଆଉ କ'ଣ କିଛି ଉତ୍ସବ ପାଳିବୁନି ?

ଏଥର ମଧ୍ୟ...ସେ ସେଇକଥା କହିବେ ।"

ତାପରେ ହଠାତ୍ ଗମ୍ଭୀର ହୋଇ କହିଲେ···

"ଅପର୍ଯ୍ୟାପ୍ତ ସମ୍ପତ୍ତି । ଘର, ବାଡ଼ି ବଗିଚ୍ଚ, ସବୁପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟ···ଦଶ ପୁରୁଷ ବସିଖାଇଲେ ସରିବନି···ମାତ୍ର ପିଲାଟିଏ ହେବ ଏକଥା ଯେପରି ଜଣାଯାଉନି । ସେତିକ ମୋର ଦୁଃଖ । ସ୍ୱପର ମାନସିକ ଶାନ୍ତି, କାର୍ଯ୍ୟନିପୁଣତା ତା' ପିଲାଙ୍କ ଭିତରେ···ଓଃ କେତେ ଆନନ୍ଦଦାୟକ ନ ହେବ ସତେ । ଏ ପୃଥିବୀରେ ତା' ସହିତ କେହି ସମକକ୍ଷ ହୋଇ ପାରିବେନି—ଯଦି ଏ ଆଶା ମୋର ଥରେ ପୂରଣ ହୋଇଯାଏ, ତେବେ ମୁଁ ଅ.ରପାରିକୁ ଯିବାପାଇଁ ପ୍ରସ୍ତୁତ । ଆନନ୍ଦରେ ଏ ପୃଥିବୀ ଛାଡ଼ି ଚାଲିଯିବ ।" ସେଦିନ ଗଭୀର ଦୁଃଖରେ ସେ କହି ଯାଉଥିଲେ । ଏହି କଥା ଗୁଡ଼ାକ ଲଭି କାନରେ ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା । ବାପାଙ୍କ ସ୍ୱପ୍ନ କିପରି ସତ୍ୟରେ ପରିଣତ ହେବ ?···ସେ ଭାବୁଥିଲା··ଭାବି ଚାଲିଥିଲା ।

ବର୍ଷକ ଭିତରେ ସେ ଏକ ବିରାଟ ଯୋଜନା ପ୍ରସ୍ତୁତ କଲା । ଅଭୂତପୂର୍ବ ଯୋଜନା··· ସମସ୍ତେ ସେଥିରେ ଚକିତ ହୋଇପଡ଼ିବେ । ଏହି ଯୋଜନା ଭାରତୀୟ ଚାଲିଚଲନ ଓ ସଂସ୍କୃତିକୁ ଦୋହଲାଇ ଦେବ ।

ରାତିଦିନ···ଲଭି ସେହି କଥାକୁ ହିଁ ଭାବୁଥିଲା ।

ସ୍ୱାମ ଓ ତା ପାଇଁ ଏହାଥିଲା ମାରାତ୍ମକ । ତୃତୀୟ ବ୍ୟକ୍ତିକୁ ପଚାରିବାର କୌଣସି ଆବଶ୍ୟକ ନ ଥିଲା । ତା'ର ବିଚାର ଓ କାର୍ଯ୍ୟ ଉପରେ ଅନ୍ୟ କେହି ଅନ୍ତରାଳରେ କ'ଣ ଅଧିକାର ଅଛି ବିଚାର କରିବାକୁ ? ଅଥବା ସେହି କଥାନେଇ ସିଦ୍ଧାନ୍ତରେ ଉପନୀତ ହେବାକୁ ? ଏଥିପାଇଁ ସେମାନଙ୍କର ମୁଣ୍ଡ ଖେଳାଇବାରେ କୌଣସି ଆବଶ୍ୟକତା ନାହିଁ ।

ସଂସ୍କୃତି ନାଆଁରେ କେତେ ଭୟଙ୍କର ଘଟଣା ନ ଘଟୁଛି । ସମସ୍ତେ କହୁଛନ୍ତି କହି ଚାଲିଛନ୍ତି ସଂସ୍କୃତି ସମ୍ପର୍କରେ, ଚରିତ୍ର ଓ ପରମ୍ପରା ନେଇ, ମାତ୍ର ଘର ଭିତରେ ସେମାନେ କ'ଣ ନ କରୁଛନ୍ତି !

ଏ ସମାଜ ନର୍କରେ ଯାଉ ।
ସମାଜରେ ଏହି ଛଳନା ଘୃଣ୍ୟ ।

ସେ ଶାନ୍ତି ଚାହେଁ, ଆନନ୍ଦ ଚାହେଁ; ବାପାଙ୍କର ଶେଷଇଚ୍ଛା ଫଳବତୀ ହେବା ଚାହେଁ । ସେଇଆ ହିଁ ତା'ର ଏକମାତ୍ର ଇଚ୍ଛା, ଏକମାତ୍ର ଚିନ୍ତା । ଏହିପରି ବ୍ୟସ୍ତ ଓ ବିବ୍ରତ ଚିନ୍ତା ଭିତରେ, ସେ କେବଳ ଧମୁଠାରୁ ସାହାଯ୍ୟ ପାଇପାରିବ ବୋଲି ଆଶାପୋଷଣ କରିଥିଲା ।

ଧମୁ ତା'ର କକେଇ ପୁଅ ଭାଇ । ତା'ଠାରୁ ପାଞ୍ଚ ବର୍ଷ ବଡ଼ । ନିହାତି ଭଦ୍ରଲୋକ । ଉଚ୍ଚମନା ଓ ବିଶାଳ ହୃଦୟ । ରମା ସହିତ ବିବେକାନନ୍ଦ କଲେଜରେ ପଢ଼ୁଥିଲା । ସେ ରମାର ଅତ୍ୟନ୍ତ ଘନିଷ୍ଠ । ମାତ୍ର ତାର ସିନେମା ପ୍ରତି ଆସକ୍ତି ବହୁତ ବେଶୀ । କୌଣସି ଏକ ପ୍ରଚାର ସଂସ୍ଥା ସହିତ ସଂଶ୍ଳିଷ୍ଟ ହୋଇ ସେ କେତେଗୁଡ଼ିଏ ପ୍ରଚାର ଚଳଚ୍ଚିତ୍ର ପ୍ରସ୍ତୁତ କରିଛି ।

"ମୁଁ ତୋ ସହିତ କଥା ହେବାକୁ ଚାହେଁ । ବହୁତ ଗୁରୁତ୍ୱପୂର୍ଣ୍ଣ ଗୁପ୍ତକଥା ।" ଦିନେ ସେ ଧମୁକୁ ଟେଲିଫୋନ୍ କରି କହିଥିଲା ଏବଂ ତା' ଆଗରେ ତା' ଯୋଜନା ଉପସ୍ଥାପିତ କରିଥିଲା ।

"ତୁ କ'ଣ ଭାବୁଛୁ ଏହା କାର୍ଯ୍ୟକାରୀ ହୋଇପାରିବ ?" ପଚାରିଲା ଧମୁ ।
"ଧମୁ, ହବ କି ନାହିଁ, ମୁଁ ଜାଣିନି, କିନ୍ତୁ ଚେଷ୍ଟା କଲେ କ୍ଷତି କ'ଣ ?"
"ରମା ସହିତ ଏ ସମ୍ପର୍କରେ କଥାବାର୍ତ୍ତା କରିଛୁ ?"

"ଆଗ୍ରେ, ପ୍ରଥମେ ଏ କାର୍ଯ୍ୟ କେତେଦୂର ସଫଳ ହୋଇପାରିବ; ସେ ବିଷୟରେ ଚିନ୍ତା କରିଯାଉ । ପରେ ରମାକୁ ସୁଁ ସବୁକଥା କହିବ ।"

ଧମୁ ଏପରି ଏକ କାର୍ଯ୍ୟରେ ସାହାଯ୍ୟ କରିପାରିବ କି ନାହିଁ ଭାବିବାକୁ କିଛି ସମୟ ଚାହିଁଥିଲା ।

× × ×

ହଠାତ୍ ଟେଲିଫୋନ୍ର କାରିଂଟି ବାଜିବାକୁ ଆରମ୍ଭ କଲା । ଲାବଣ୍ୟ ତା'ର ପାଟି ଖୋଲିବାକୁ ଚେଷ୍ଟା କରୁଥିଲା ।
"ଶୋଇଛୁ କି ?" ଧମୁ ପଚାରିଲା ।
"କେତେ ପୁରୁଣା ଚିନ୍ତା ।"

ସେ ସବୁ ଜାଣିଥିଲା । ତେଣୁ ନୀରବ ରହିବାକୁ ଭଲ ମନେକଲା ।

ସେହି ଅଣଓସାରିଆ, ଅପ୍ରଶସ୍ତ ରାସ୍ତାରେ ଗାଡ଼ି ଚଳାଇବା କଷ୍ଟକର । ସମଗ୍ର ପରିବେଶଟି ମଧ୍ୟ ଅସ୍ୱାସ୍ଥ୍ୟକର । ସୂପୂର୍ ଛୁଆଗୁଡ଼ାକ ଇତସ୍ତତଃ ବୁଲିବାରେ ବ୍ୟସ୍ତ । ଅଧାଲଙ୍ଗଳା, ରୋଗାକ୍ରାନ୍ତ ପିଲାଗୁଡ଼ାକ ଗଳିସାରା ବୁଲୁଛନ୍ତି । ଲୋକମାନଙ୍କୁ ନେଇ ରିକ୍ସା ଯାତାୟତ କରୁଛି । କେତେକ ସ୍ତ୍ରୀଲୋକ ଶରୀରକୁ ଅଧାଲଙ୍ଗଳା କରି ନିଜର ଉନ୍ମତ୍ତ ଯୌବନକୁ ଲୋକମାନଙ୍କୁ ଦେଖାଇ ସେମାନଙ୍କ ମନ ହରିବାକୁ ଚେଷ୍ଟା କରୁଛନ୍ତି । ହଠାତ୍ ଧମୁର ମନ ଯେପରି ଅସୁଖୀ ହୋଇ ଉଠୁଥିଲା । କୌଣସି ଭଦ୍ର-ଘରର ଲୋକଙ୍କ ପାଇଁ ଏ ସ୍ଥାନ ଉପଯୁକ୍ତ ନୁହେଁ । ମେନକାକୁ ହୁଏତ ଏ ଅପରିଚ୍ଛନ୍ନ ପରିବେଶରୁ ନେଇଯାଇ ଲଭି ସହିତ ସାକ୍ଷାତ କରାଯାଇ ପାରିଥା'ନ୍ତା ।

କାର୍‌ର ଗତି ବନ୍ଦ ହେଲା ।

"ଏଇଟା ତା'ର ଘର । ତୁ ଟାଙ୍ଗରେ ଅପେକ୍ଷା କର ।"

ସେ ଘର ଭିତରକୁ ଯାଇ ପାଞ୍ଚ ମିନିଟ୍‌ରେ ଫେରି ଆସିଲା ।

"ସେ ଘରେ ଅଛି । ତୁ ଘର ଭିତରକୁ ଯିବୁ ନା ମୁଁ ତାକୁ ଏଠାକୁ ନେଇ ଆସିବି ?"

"ନା, ମୁଁ ଯିବି ।"

ସେ ଘର ଅନେକ ଭଡ଼ାଟିଆଙ୍କର ରହିବା ଜାଗା । ଅପରିଷ୍କାର, ଦାରିଦ୍ର୍ୟ ଓ ଏକ ବିକଟ ଦୁର୍ଗନ୍ଧରେ ସମଗ୍ର ପରିବେଶ ପୂର୍ଣ୍ଣ । ସେମାନେ ଉପର ମହଲାକୁ ଉଠିଲେ । ତୃତୀୟ କୋଠରୀରେ ପ୍ରବେଶ କଲେ ।

"ଭିତରକୁ ଆସନ୍ତୁ !" ମେନକା ସମ୍ବର୍ଦ୍ଧନା ଜଣାଇ କହିଲା । ସେ ଅତି ଆଶ୍ଚର୍ଯ୍ୟ ଭାବରେ ଲଭିକୁ ଦେଖୁଥିଲା । ଅନ୍ୟ ଭଡ଼ାଟିଆ ଲୋକମାନେ ସେଠାରେ ଏହି ସମ୍ଭ୍ରାନ୍ତ ମହିଳା ଜଣଙ୍କୁ ଦେଖିବାକୁ ସେତେବେଳକୁ ଏକାଠି ହୋଇ ଯାଇଥିଲେ । ସେ ବାଉଁଶ ତିଆରି ଦୁଇଟା ଷ୍ଟୁଲ୍ ସେମାନଙ୍କ ବସିବା ପାଇଁ ଦେଲା । ସେମାନେ ଚୁପ୍‌ଚାପ୍ ବସିଗଲେ ।

ଦୁଇ ମିନିଟ୍ ବିତିଗଲା ।

"କୁଆଡ଼େ ଆସିଥିଲେ ?"

ମେନକା ଧମୁକୁ ପଚାରିଲା ।

ଧମୁ ଯେପରି ବିବ୍ରତ ହୋଇ ପଡ଼ିଥିଲା । ସେ ଲଭ ଆଡ଼କୁ ଆଖି ଫେରାଇଲା ।

"ସେ କ'ଣ କୌଣସି ଚଳଚ୍ଚିତ୍ର ପ୍ରଯୋଜକ ? ମୁଁ କ'ଣ ତାଙ୍କର ପ୍ରସ୍ତୁତ କୌଣସି ଛବି ପାଇଁ ନିଯୁକ୍ତି ପାଇବାକୁ ଯାଉଛୁ ?" ମେନକା ଖୁସିରେ ପଚାରିଲା । ତଥାପି ଲବଣ୍ୟ ଚୁପ୍ ରହିଲା ।

"ଯଦି ତୁମେ ମୋ ସହିତ କଥାବାର୍ତ୍ତା କରିବ ନାହିଁ, ତେବେ ମୋ ପାଖକୁ ଆସିଲ କାହିଁକି ?"

ଧମୁ ଆରମ୍ଭ କଲା—"ଶୁଣ୍, ଆମେ କୌଣସି ଛବିର ପ୍ରସ୍ତୁତ ନେଇ ଏଠାକୁ ଆସି-ନାହୁଁ । କିନ୍ତୁ ଏ ଭଦ୍ରମହିଳା ଏକ ବିଶେଷ କାର୍ଯ୍ୟରେ ତୋର ସାହାଯ୍ୟ ଆବଶ୍ୟକ କରନ୍ତି । ସେ ତୋ ସହିତ କଥାବାର୍ତ୍ତା କରିବା ପାଇଁ ଏଠାକୁ ଆସିଛନ୍ତି ।"

ମେନକା ପ୍ରଶ୍ନଭରା ଦୃଷ୍ଟିରେ ଲଭ ଆଡ଼କୁ ଚାହିଁ କହିଲା, "ସେ ତ ଚୁପ୍‌ଚାପ୍ ବସିଛନ୍ତି । କିଛି କୁହନ୍ତୁ ।"

ଲବଣ୍ୟ ଆରମ୍ଭ କଲା, "ଆମେ ଏଠାକୁ କାହିଁକି ଆସିଛୁ ; ମୁଁ ତୋତେ କହିବ ।"

"ପ୍ରଥମେ ମୋତେ କହ, ତୁ କ'ଣ ଏଠାରେ ଏକାକୀ ?"

"ନା, ମୋ ସହିତ ଏଠାରେ ଆଉ ଦୁଇଟି ଝିଅ ଅଛନ୍ତି—କମଳା ଓ [illegible] ।"

"ସେମାନେ ବର୍ତ୍ତମାନ କେଉଁଠି ?"

"ରାତି କାମ ।" ଅଦୌ ଲଜ୍ଜା ନ କରି ମେନକା କହିଥିଲା ।

"ରାତି କାମ" ଅର୍ଥ ଲବଣ୍ୟ ବୁଝି ପାରିଥିଲା ।

"ତୁମେ ଯାଇନାହଁ କାହିଁକି ?"

"ହଁ ; ମୁଁ ଯାଏ । ମାତ୍ର ସବୁଦିନେ ନୁହେଁ ।" ଟଙ୍କା ଦରକାର ପଡ଼ିଲେ ଓ ଖାଇବା ପାଇଁ କିଛି ନ ଥିଲେ, ମୁଁ ଯାଏ । ନଚେତ୍ ନୁହେଁ ।"

"ତୁମେ ଭଲ ଇଂରାଜୀ କହୁଛ ? ପାଠ ପଢ଼ିଛ ?"

"ଯଦି ମୋର ଇଂରାଜୀ କହିବା ଶୁଣି ତୁମେ ଭାବୁଛ ମୁଁ ଶିକ୍ଷିତା, ତେବେ ମୋର କିଛି କହିବାର ନାହିଁ ।" ମେନକା ସ୍ମିତ ହସି ହସି ପଚାରିଲା, "ମୋଠାରୁ ତୁମେ କ'ଣ ଚାହଁ ? ସମୟ ନଷ୍ଟ କରିବା ଉଚିତ ନୁହେଁ ?"

"ମେନକା, ମାସକୁ କେତେ ଟଙ୍କା ତୁମେ ରୋଜଗାର କର ?"

ମେନକା ଧମୁ ଆଡ଼କୁ ନୀରବରେ ଚାହିଁଲା । ହୁଏତ ହଜାରେ ବା ଶହେ ।

କାମ ଅନୁସାରେ । ମାତ୍ର ତା' ସହିତ ତୁମର କ'ଣ ସମ୍ପର୍କ । ତୁମେ ଯାହା କହିବାକୁ ଚାହଁ ; ତାହା ସିଧା କହିଦିଅ । କାଲି ମୋର ଗୋଟିଏ ଗ୍ରୁପ୍ ନାଚ ଅଛି । ମୋତେ ପ୍ରାକ୍ଟିସ୍ କରିବାକୁ ହେବ ।"

"ମନେକର ମାସକୁ ତୁ ହଜାରେ ଟଙ୍କା ରୋଜଗାର କରୁଛୁ ; ତେବେ ବର୍ଷକୁ ବାର ହଜାର । ଠିକ୍ ? ମନଦେଇ ଶୁଣ୍ । ତୁ ମୋ ପାଖରେ ପୁରା ବର୍ଷେ ଚାକରୀ କରିବୁ । ମୁଁ ତୋତେ ପଚାଶ ହଜାର ଟଙ୍କା ଦେବି । ମୋର ସର୍ତ୍ତ ସମସ୍ତ ପୂରଣଗଲେ ତୁ ସମ୍ପୂର୍ଣ୍ଣ ମୁକ୍ତ । ସେତେବେଳେ ତୁ ହେବୁ ଏକ ମୁକ୍ତ ଚଢ଼େଇ ।" ଲାବଣ୍ୟ ଜାଣି ଜାଣି ଏକଥା କହିଲା ।

"କେବଳ ଟଙ୍କା ନୁହେଁ ;" ସେ କହି ଚାଲିଥିଲା "ଏ ବର୍ଷକର ତୋର ଯାବତୀୟ ଖର୍ଚ୍ଚ ମଧ୍ୟ ମୁଁ ଦେବି ! ତୋର ରହିବା, ଖାଇବା, ଲୁଗାପଟା ଓ ଅନ୍ୟାନ୍ୟ ଖର୍ଚ୍ଚ । ସେହି ପଚାଶ ହଜାର ଟଙ୍କା କେବଳ ତୋର ପକେଟ୍ ଖର୍ଚ୍ଚ ସ୍ୱରୂପ ଦିଆଯିବ ।"

"ପଚାଶ ହଜାର ଟଙ୍କା !"

"ବର୍ଷକ ପାଇଁ ଆଉ କୌଣସି ଖର୍ଚ୍ଚ ନାହିଁ ?"

"ଏହି ସ୍ତ୍ରୀ ଲୋକଟି କ'ଣ ପାଗଳ ?"

"ମୋର କାମ କ'ଣ ?" ମେନକା ପଚାରିଲା ।

ଲାବଣ୍ୟ ଉଠି ଛିଡ଼ାହେଲା । "ବେଶି କଷ୍ଟକର କାମ ନୁହେଁ । ବର୍ଷକ ପାଇଁ ତୋତେ ମୋ ସହିତ ରହିବାକୁ ହେବ । ବାସ୍, ସେତିକି । ମୁଁ ପରେ ସବୁକଥା ବିଶଦ ଭାବରେ ବୁଝାଇ ଦେବି । ମୁଁ ତୋତେ ଦିନେ ସମୟ ଦେଉଛି ; ଆମେ ପୁଣି କାଲି ଆସିବୁ । ଧମୁ, ଚାଲ ଏଥର ଯିବା ।"

ମେନକା ଆଶ୍ଚର୍ଯ୍ୟ ହୋଇ ସେମାନଙ୍କୁ ଚାହିଁ ରହିଥିଲା ।

ଲାବଣ୍ୟ ତା' କାନ୍ଧରେ ହାତ ପକାଇ କହିଲା, "ଧମୁ ମୋତେ କହିଛୁ, ତୁ ଭାରି ସାହସିନୀ ଏବଂ ଉଚ୍ଚାକାଙ୍କ୍ଷୀ ଝିଅ । ସେଇଥିପାଇଁ ମୁଁ ଏଠାକୁ ଆସିଛୁ । ତୁ କାହାକୁ କହିବୁନି ଆମେ କାହିଁକି ଏଠାକୁ ଆସିଥିଲୁ ବା ତୋ ସହ କ'ଣ କଥା ହେଲୁ । ଏହାକୁ ଅତ୍ୟନ୍ତ ଗୋପନୀୟ ରଖିବାକୁ ଚେଷ୍ଟା କରିବୁ । ଆସନ୍ତା କାଲି ସନ୍ଧ୍ୟା ଚାରିଟାବେଳେ । ଶୁଭରାତ୍ରି ।"

ମେନକା ତୁଣ୍ଡରୁ ଭାଷା ଫୁଟୁ ନ ଥିଲା ।
ସେ ଦୁଇଜଣ ତାକୁ ଆଶ୍ଚର୍ଯ୍ୟ ଚକିତ କରି ଚାଲିଗଲେ ।

"ସେ କ'ଣ ଆଉ କାହା ସହିତ ପରାମର୍ଶ କରିବ ।" ଲାବଣ୍ୟ ବାଟରେ ପଚାରିଲା ।
ଧମୁ ମୁଣ୍ଡ ହଲାଇଲା, ଅର୍ଥାତ୍ "ମୁଁ ଜାଣେ ନାହିଁ ।"

ପରେ ପହଞ୍ଚି, ସେ ତାକୁ ଆସନ୍ତା କାଲି ସକାଳେ ଟେଲିଫୋନ୍ କରିବାକୁ କହିଲା । ଲାବଣ୍ୟ ଉପର ମହଲାକୁ ଯାଇ ଆସନ୍ତାକାଲିର କାର୍ଯ୍ୟକ୍ରମ ପ୍ରସ୍ତୁତ କରି ନେଲା । ରାମ ଆଜି ଗଲେ କାଲି ଆସିବ । ତା' ପୂର୍ବରୁ ତାକୁ କିଛି ସିଦ୍ଧାନ୍ତରେ ଉପନୀତ ହେବାକୁ ହେବ ।

× × ×

ସମୁଦ୍ର ପବନ ବେଶ୍ ଟିକିଏ ଥଣ୍ଡା ହେଲା । ଚୁପିଚୁପିକିଆ ଅନ୍ଧାର । ଲାବଣ୍ୟ ମେନକାର ମୁହଁକୁ ଚାହିଁଲା । ସେ ଦୀର୍ଘ ଅଧଘଣ୍ଟାଏ ଧରି ତାକୁ କ'ଣ କରିବାକୁ ହେବ କହି, ତା' ମୁହଁରେ ଉଠୁଥିବା ଭାବନାଗୁଡ଼ିକୁ ଲକ୍ଷ୍ୟ କରୁଥିଲା । ମଝିରେ ମେନକା ଆଦୌ କିଛି କହି ନ ଥିଲା । ତା' ମନରେ ଦ୍ୱନ୍ଦ୍ୱ ଉଠୁଥିଲା—

"ମୁଁ ? ଏହିଭଳି ? ତୁମେ ମୋତେ କ'ଣ ଭାବିଛ କି ? ...କାରଣ ମୁଁ ଗରିବ ; ମୋତେ ଯେ କୌଣସି କାମ ପାଇଁ ଲଗାଯାଇ ପାରିବ । ମୋର କ'ଣ ମନ ନାହିଁ ; ଇଚ୍ଛା ନାହିଁ, ଆତ୍ମସମ୍ମାନ ନାହିଁ !" ମେନକା ଏସବୁ ଭାବୁଥିଲେ ମଧ୍ୟ କିଛି କହୁ ନ ଥିଲା ।

ସେ ନୀରବ ଆତ୍ମପ୍ରତ୍ୟୟରେ ସ୍ଥିର ଓ ଅବିଚଳିତ ହୋଇ ଶୁଣୁଥିଲା ।

ଧମୁ ଠିଆ ହୋଇଥିଲା ସେମାନଙ୍କଠାରୁ ଅଳ୍ପ ଦୂରରେ । ଶେଷରେ ଲାବଣ୍ୟ କହିଲା, "ମେନକା ! ମୁଁ ଯାହା କହିଲି, ତୁ ବୁଝିଲୁ । ତୁ ମୋ ସହିତ ଏକମତ ନା ନୁହଁ ? ପରିଷ୍କାର ଭାବରେ ମନଖୋଲି କହ ।"

ମେନକା ଯେତେବେଳେ କହିବାକୁ ଆରମ୍ଭ କଲା, କେତେ ସମସ୍ତ ପରେ କେଜାଣି ତାର ଆଖି ଦୁଇଟି ନାଚୁଥିଲା ସେପରି । ତା'ର ଅତ୍ୟନ୍ତ କଳା, ସୁନ୍ଦର, ମନଲୋଭା ଆଖି ଦୁଇଟି । ସାମାନ୍ୟ ଈଷତ୍ ହସ, ସୁଗଠିତ ଦାନ୍ତଗୁଡ଼ିକ ଜକ୍‌ଜକ୍ କରି ଉଠୁଥିଲା ।

"କିଛି ଲୁଚାଇବାର ନାହିଁ । ମୁଁ ମନଖୋଲି କହୁଛି । ମୁଁ ଆଦୌ ଉଦ୍‌ବେଗିତ ନୁହେଁ ।" ମେନକା ପରିଷ୍କାର ଭାବରେ କହିଲା । "ମୁଁ ଧମୁ ସାର୍‌ଙ୍କୁ ଭଲ ଭାବରେ ଜାଣେ । ତାଙ୍କ ଭଳି ଭଦ୍ରଲୋକ ମିଳିବେନି, ତାଙ୍କର ଆମାୟିକ ବ୍ୟବହାର ଓ କର୍ମନିଷ୍ଠତା—ମୁଁ ଭଲକରି ବୁଝିଛି । ଏ କ୍ଷେତ୍ରରେ ତାଙ୍କଭଳି ଲୋକ କେହି ନାହାନ୍ତି ! ମୁଁ ଜାଣେ ସେ ମୋର ବ୍ୟକ୍ତିଗତ ଜୀବନ ବିଷୟରେ ବେଶୀ କିଛି ଜାଣନ୍ତି ନାହିଁ ।

ମାତ୍ର ମୁଁ ଭାବୁଛି ; ମୁଁ ତାଙ୍କୁ ଭଲ ଭାବରେ ଜାଣେ । ତାଙ୍କର ଉତ୍ତମ ସ୍ୱଭାବ, ପ୍ରଶାନ୍ତ ହୃଦୟ ଓ କର୍ମନିଷ୍ଠତା ସହିତ ମୁଁ ଭଲରୂପେ ପରିଚିତ । ତାଙ୍କଭଳି ଦକ୍ଷଲୋକ କୋଟିକରେ ଗୋଟିଏ । ମୁଁ ବହୁ ଲୋକଙ୍କ ସମ୍ପର୍କରେ ଆସିଛି । ମାତ୍ର ତାଙ୍କ ପ୍ରତି ମୋର ଗଭୀର ସମ୍ମାନ ରହିଛି । ସମାଜରେ ସେ ଉଚ୍ଚତର ସ୍ଥାନର ଅଧିକାରୀ ହେବାରୁ ସମସ୍ତେ ତାଙ୍କ ପ୍ରତି ଈର୍ଷାନ୍ୱିତ । ଯେତେବେଳେ 'ଆଜିର ଭାରତ' ଛବି ସେ ପ୍ରସ୍ତୁତ କରୁଥିଲେ, କେହି ଜଣେ ମୋ ସମ୍ପର୍କରେ ତାଙ୍କ ପାଖରେ ଖରାପ ମନ୍ତବ୍ୟ ଦେଲା । ଜାଣିଛ, ସେ ଲୋକଟି ଥିଲା ଏକ ସମ୍ଭ୍ରାନ୍ତ ପରିବାରର । ଧମୁ ସାର୍ ଏକଥା ଶୁଣିବା ମାତ୍ରେ ସେ ବ୍ୟକ୍ତିକୁ ମୋତେ କ୍ଷମା ମାଗିବା ପାଇଁ ବାଧ୍ୟକଲେ । ଛବିର ସାଇଡ୍‌– ରୋଲ୍‌ରେ କାମ କରୁଥିବା ବ୍ୟକ୍ତିଙ୍କ ପ୍ରତି ତାଙ୍କର ସମ୍ମାନ ଓ ବ୍ୟବହାର ଏଥିରୁ ଜଣାପଡ଼େ । ତୁମେ ଏପରି ଜଣେ ଲୋକଙ୍କ ମାଧ୍ୟମରେ ମୋ ପାଖକୁ ଆସିଛ, ମୁଁ ତୁମର ସବୁକଥା ଗ୍ରହଣ କରିନେବି, ଧମୁ ସାର୍ ଯାହା କହିବେ ମୁଁ ତାହା କରିବି ।"

ସେ କ'ଣ କହୁଛୁ ? ଅସମ୍ମତ ନ ହୋଇ ସେ ସମ୍ମତ ହେଲା କପରି ? ଏଥରକ ଆଶ୍ଚର୍ଯ୍ୟଚକିତ ହେଲେ ଲବଣ୍ୟ "ଧମ୍ବୁ; ଏଠାକୁ ଆସ," ଅତ୍ୟନ୍ତ ଆନନ୍ଦ ଗଦ୍ ଗଦ୍ ସ୍ୱରରେ ଡାକିଲ ଲବଣ୍ୟ । "ସେ ଏ କାର୍ଯ୍ୟ ପାଇଁ ରାଜି ।"

"ସତ, ମେନକା ?" ଧମ୍ବୁ ପଚାରିଲା ।

"ହଁ, ମୁଁ ପ୍ରସ୍ତୁତ !"

"ଆଉ ଥରେ ଭାବ । ଚଞ୍ଚଳ ସିଦ୍ଧାନ୍ତ ନେବାର କୌଣସି ପ୍ରୟୋଜନ ନାହିଁ । ଏଥିପାଇଁ ମୁଁ ତୁମକୁ ଦୁଇଦିନ ସମୟ ଦେଉଛି ।"

"ସାର୍, କିଛି ଦରକାର ନାହିଁ । ଆପଣ ଏ ଭଦ୍ରମହିଳାଙ୍କ ସହ ଆସିଛନ୍ତି । ମୁଁ ଜାଣେନା, ସେ ଆପଣଙ୍କର ବନ୍ଧୁ ବା ସମ୍ପର୍କୀୟା । ତଥାପି ସେ ଆପଣଙ୍କର ଅତି ନିକଟ ସମ୍ପର୍କର ଲୋକ ବୋଲି କଥାବାର୍ତ୍ତାରୁ ଜଣାପଡ଼ୁଛି । ସେତିକି ମୋ ପାଇଁ ଯଥେଷ୍ଟ । ତା'ଛଡ଼ା ମୋତେ ଏତେ ଟଙ୍କା ବା କିଏ ଦେବ ! ମୁଁ ପ୍ରସ୍ତୁତ ସାର୍ ।"

ସମସ୍ତେ କିଛି ସମୟ ସମ୍ପୂର୍ଣ୍ଣ ନୀରବ ।

"ତୁମେ ପୂର୍ଣ୍ଣ ପ୍ରାଣରେ ଏହାକୁ ସମର୍ଥନ କରୁଛ ତ ।"

"ହଁ, ସାର୍ ।"

"ତୁମେ ଶପଥ କରି କହିବ, ଏକଥା କାହା ଆଗରେ ପ୍ରକାଶ କରିବ ନାହିଁ । ତୁମର ହୁଏତ କୌଣସି ଦେବୀ ଦେବତାଙ୍କ ପ୍ରତି ଅଗାଧ ବିଶ୍ୱାସ ଥିବ । ଚାଲ, ସେହି ମନ୍ଦିରକୁ ଯିବା ଏବଂ ସେଠାରେ ତୁମେ ଶପଥ କରିବ ।"

ମୃଦୁ ହସି ମେନକା କହିଲା, "ମୋର କୌଣସି ଦେବାଦେବୀଙ୍କ ଉପରେ ବିଶ୍ୱାସ ନାହିଁ; କିନ୍ତୁ ମୁଁ ମୋ କଥା ରକ୍ଷାକରିବ ବୋଲି ଶପଥ ଗ୍ରହଣ କରୁଛି ।"

ଧମ୍ବୁ ତା'ର ସ୍ତ୍ରୀକୁ ମେନକା ରହୁଥିବା ଘର ପାଖକୁ ଗୁପ୍ତରେ ପଠାଇଥିଲା ଏବଂ ତାଠୁ ଜାଣିବାକୁ ପାଇଲା ମେନକା ଏ ବିଷୟରେ କୌଣସି କଥା କାହାକୁ କହିନି । ଏହା ଜାଣିବା ପରେ ଲବଣ୍ୟର ବିଶ୍ୱାସ ତା'ପ୍ରତି ଅଧିକ ବଢ଼ିଗଲା ।

ହଠାତ୍ ସେ ଅତ୍ୟନ୍ତ ଆନନ୍ଦିତ ହୋଇ ଉଠିଲା ।

ସ୍ୱାମୀର ସମ୍ମତି ପରେ ଡାକ୍ତର ସୁଶୀଲାଙ୍କ ସହିତ ପରାମର୍ଶ କରିବାକୁ ହେବ ଏବଂ ତା'ପରେ ଏ କାର୍ଯ୍ୟରେ ହାତ ଦେବାକୁ ହେବ ।

ନିଜ ଶାଢ଼ୀରୁ ବାଲି ଝାଡ଼ି ଝାଡ଼ି ଲାବଣ୍ୟ କହିଲା "ଗୁରୁ ଦିନ ପରେ ଆମେ ତୋ ନିକଟକୁ ଆସିବୁ । ଯଦି କିଛି ସ୍ଥିର ନ ହୁଏ, ତେବେ ଧର୍ମ ତୋତେ ପୁରସ୍କାର ସ୍ୱରୂପ ଦୁଇ ହଜାର ଟଙ୍କା ଦେବ । ତା'ହେଲେ ତୁ ଏକଥା ସବୁ ଭୁଲିଯିବୁ । ଯଦି ଯୋଜନା କାର୍ଯ୍ୟକାରୀ ହେବାର ସମ୍ଭାବନା ଦେଖାଯାଏ, ତେବେ ମୁଁ ତୋ ସହିତ ଦେଖାକରିବି ଏବଂ ଅନ୍ୟାନ୍ୟ କାର୍ଯ୍ୟପନ୍ଥା ବାହାର କରିବି ।"

ମେନକା ସେଥିରେ ରାଜି ହେଲା ।

× × ×

ତା' ପରଦିନ ସକାଳ । ଲାବଣ୍ୟ ଟେଲିଫୋନ୍ କଲେ ଡାକ୍ତର ସୁଶୀଲାଙ୍କୁ ।
"ସୁପ୍ରଭାତ, ଡାକ୍ତର ।"

"ହ୍ୟାଲୋ, ଲାବଣ୍ୟ, ସୁପ୍ରଭାତ । କେମିତି ଅଛୁ ?"
"ଖୁବ୍ ଭଲ । ଧନ୍ୟବାଦ । ମୁଁ ଆପଣଙ୍କ ସହିତ ଗୋଟିଏ ଗୁପ୍ତ ଆଲୋଚନା କରିବାକୁ ଇଚ୍ଛା କରେ । ଆପଣଙ୍କ ପାଖକୁ କେତେବେଳେ ଆସିପାରିବି ?"

ନିଜର ଡାଏରୀ ଦେଖି ସେ ତାକୁ ମଧ୍ୟାହ୍ନ ଭୋଜନ ସମୟରେ ଆସିବାକୁ କହିଲେ । ସେଦିନ ଠିକ୍ ଗୋଟାଏ ବେଳେ, ଲାବଣ୍ୟ ଡାକ୍ତରଙ୍କ ଘରେ ପହଞ୍ଚିଲା । ସେ ସମୟରେ ଡାକ୍ତରଙ୍କ ସହିତ ଏ ବିଷୟରେ କୌଣସି କଥାବାର୍ତ୍ତା ହେଲାନି, କାରଣ ଉଭୟ ସ୍ୱାମୀ ସ୍ତ୍ରୀ ମଧ୍ୟାହ୍ନ ଭୋଜନରେ ବ୍ୟସ୍ତ ଥିଲେ ।

ମଧ୍ୟାହ୍ନ ଭୋଜନ ପରେ ଲାବଣ୍ୟ ଓ ସୁଶୀଲା ବୈଠକଖାନାକୁ ଗଲେ ।
"ହୁଁ କେଉଁଥିପାଇଁ ତୁ ଏତେ ବ୍ୟସ୍ତ ।" ଡାକ୍ତରାଣୀ ପଚାରିଲେ ।

ଗୋଟିକ ପରେ ଗୋଟିଏ ଲାବଣ୍ୟ ତା'ର ଯୋଜନା ସୁଶୀଲା ଆଗରେ କହିବାକୁ ଲାଗିଲା । ତା କହିବାରେ ଥିଲା କାରୁଣ୍ୟ ଓ ବେଦନା । ଡାକ୍ତର ତା କଥାର ଗୁରୁତ୍ୱ ଉପଲବ୍ଧି କଲେ ।

"ଏ ହେଉଛି ମୋର ଯୋଜନା । ମୁଁ ମେନକା ନାମରେ ଗୋଟିଏ ଝିଅକୁ ଠିକ୍ କରିଛି । ସେ ଏ କାର୍ଯ୍ୟପାଇଁ ପ୍ରସ୍ତୁତ । ସେ ଏହାକୁ ସମ୍ପୂର୍ଣ୍ଣ ଗୋପନ ରଖିବାପାଇଁ କଥା ଦେଇଛି । ଆପଣଙ୍କ ସହିତ ପରାମର୍ଶ କରି ସାରିବା ପରେ, ମୁଁ ରାମ ସହିତ କଥା ହେବ, ଯୁକ୍ତି କରି, କାନ୍ଦକରି ବା ଯେ କୌଣସି ଉପାୟରେ ହେଉ ।" ମୋ କଥା ଗ୍ରହଣ କରିବାକୁ ବାଧ୍ୟ କରିବ ।

"ତୁ କ'ଣ ବିଶ୍ୱାସ କରୁ ମେନକା ତା'ର କଥା ରଖିବ ?"

"ମୁଁ ବିଶ୍ୱାସ କରୁଛି ଡାକ୍ତର । ବିଶ୍ୱାସକୁ ଛାଡ଼ିଦେଲେ ଏ ସଂସାର ଚାଲି ପାରିବନି ?"

"ଠିକ୍ ଅଛି । ବର୍ତ୍ତମାନ ତୋତେ କହେ, ଏହା ଚିକିତ୍ସା ଦ୍ୱାରା ସମ୍ଭବ କି ? ଭାରତରେ ଏହି କାର୍ଯ୍ୟ ବ୍ୟାପକ ଭାବେ ପ୍ରଚଳିତ ହୋଇନି । ଯେଉଁ ଡାକ୍ତରମାନେ ଏଥିରେ ବିଶେଷ ଜ୍ଞାନ ଲାଭ କରିଛନ୍ତି, ସେମାନଙ୍କର ସଂଖ୍ୟା ବହୁତ କମ । ଭାଗ୍ୟବଶତଃ ମୁଁ ଲଣ୍ଡନରେ ଥିବାବେଳେ ଏହିଭଳି କେତେଗୁଡ଼ିଏ କେଶ୍ ହାତକୁ ନେଇଥିଲି ! ତେଣୁ ମୋ ତରଫରୁ କୌଣସି ସମସ୍ୟା ନାହିଁ । ରାମ ସହିତ ତୁ ଆଗ କଥା ହୁଅ । ପ୍ରଥମେ ସ୍ୱାମୀ ସ୍ତ୍ରୀ ଏ ବିଷୟରେ ପ୍ରତିଜ୍ଞାବଦ୍ଧ ହେବାକୁ ହେବ । ଅବଶିଷ୍ଟ କାର୍ଯ୍ୟ ମୁଁ କରିବ ।"

ଡାକ୍ତର ଅନୁମାନ କଲେ କୌଣସି କାରଣରୁ ଲାବଣ୍ୟ ଟିକିଏ ବିବ୍ରତ ହୋଇପଡ଼ିଛି !

"ମୁଁ ହେଉଛି ଡାକ୍ତର । ମୁଁ ମୋର କାର୍ଯ୍ୟକୁ ଈଶ୍ୱରୀୟ ବୋଲି ଭାବେ । ତେଣୁ ଏ ବିଷୟରେ ମୁଁ ମୋର ସ୍ୱାମୀ ବା ରାମ ସହିତ ଆଦୌ କଥା ହେବିନାହିଁ ।"

"ବହୁତ ଧନ୍ୟବାଦ ।" ଲାବଣ୍ୟ ଆନନ୍ଦ ଗଦ୍ ଗଦ୍ ହୋଇ କହିଲା ।

× × ×

ସନ୍ଧ୍ୟାବେଳେ ଆସୁଥିବା ଉଡ଼ାଜାହାଜରେ ରାମ ଆସି ପହଞ୍ଚିଲା ସେଦିନ । ଆଗ୍ନେୟ-ଗିରିରୁ ଉତ୍କ୍ଷିପ୍ତ ଲାଭା ସଦୃଶ ଏକ ଯୋଜନାକୁ କାର୍ଯ୍ୟକାରୀ କରିବାର ସିଦ୍ଧାନ୍ତକୁ ଲାବଣ୍ୟ ଦୀର୍ଘ ସ୍ମରଣୀୟ ଦିନ ହେବ ପ୍ରସ୍ତୁତ କରିଛି ; ଏ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ, ରାମ ବିଦେଶରୁ ଆସି ପହଞ୍ଚିଲା ।

କାଚ ଝରକାର ସେପାଖରୁ ସ୍ମିତ ହସ୍ ହସି ରାମ କବାଟ ଖୋଲି ଚିତ୍କାର କଲା, "ହ୍ୟାଲୋ ଡାର୍ଲିଂ; ତୁ ଏଥର ବହୁତ ମନେ ପଡ଼ିଲୁ । ପାଖରେ ତୁ ନ ଥିବାରୁ ଭାରି ଖରାପ ଲାଗିଲା ।" ଲାବଣ୍ୟକୁ ନିଜ ବାହୁବନ୍ଧନରେ ବାନ୍ଧି ରାମ ଉଡ଼ାଜାହାଜ ପଡ଼ିଆରୁ ବାହାର କାର୍ ରହିଥିବା ଦିଗକୁ ଆସିଲା । ଲାବଣ୍ୟ ନିଜେ ଗାଡ଼ି ଚଲାଇ ଆସିଥିଲା । ଫେରିବା ବାଟରେ ରାମ ଡ୍ରାଇଭର ସିଟ୍‌ରେ ବସି ଗାଡ଼ି ଷ୍ଟାର୍ଟ କଲା ।

"ଡ୍ରାଇଭର କୁଆଡ଼େ ଗଲା ?...ସବୁ ଠିକ୍ ଅଛି ତ ।"

"ଏଇ ଘୃଣଦନ କଟାଇ ବିତାଇଲି ?" ସେ ଲାଭର ପିଠି ଆଉଁସି ଆଉଁସି ପଚାରିଲା । ତା'ପରେ ତା'ର ବମ୍ବେ ଯିବାର କାହାଣୀ ଏବଂ ସେ କପରି କାର୍ଯ୍ୟ ହାସଲ କଲା ତାହା ଲାବଣ୍ୟ ଆଗରେ ବିଶଦ ଭାବରେ ବର୍ଣ୍ଣନା କଲା । ବର୍ଣ୍ଣନା କରୁଥିବା ସମୟରେ କିନ୍ତୁ ରାମର ଗୋଟିଏ ହାତ ଲାବଣ୍ୟ ପିଠିସାରା ବୁଲୁଥାଏ ।

ରାମର ପ୍ରସନ୍ନ ସ୍ୱଭାବ ଲାବଣ୍ୟକୁ ଭଲ ଲାଗୁଥିଲା ।

ଘରେ ପହଞ୍ଚି ସେମାନେ ପ୍ରବେଶ କଲେ· ସେମାନଙ୍କର ଶୀତତାପ ନିୟନ୍ତ୍ରିତ ଶୟନ କକ୍ଷକୁ ।

ତା'ର ସୁଡୋଲ ବେକ ଗୃର ପାଖରେ ନିଜର ହାତକୁ ବେଢ଼ାଇ ଦେଇ ରାମ ତା' ଚିବୁକ୍‌ରେ ଚୁମ୍ବନଟିଏ ଆଙ୍କିବା ସମୟରେ ଲାବଣ୍ୟ ନିଜ ମୁହଁକୁ ତା' ହାତ ଭିତରେ ଲୁଚାଇ ରଖି ପଚାରିଲା, "ପ୍ରିୟ ! ତୁମେ କ'ଣ କ୍ଲାନ୍ତ ?"

ମାତ୍ର ରାମ ତାକୁ ଧରି ଘୂରିବାକୁ ଲାଗିଲା ଏବଂ ଖୁସିରେ କହିଲା, "କ୍ଲାନ୍ତ ! ମୁଁ ? ମୁଁ କେତେ ସତେଜ ଓ ଶକ୍ତିଶାଳୀ ତାହା ଏଇଲେ ଦେଖାଇବି କି ?"

ତା'ର ଗୋଲାପି ଓଠକୁ ରାମ ଓଠ ସହିତ ଯୋଡ଼ିଦେଇ ଲାଭି କହିଲା—"ମୋର ଗୋଟିଏ ଇଚ୍ଛା ଅଛି ; ତାକୁ କ'ଣ ତୁମେ ପୂର୍ଣ୍ଣ କରିବ ।"

"ଆଦେଶ କର ମୋର ପ୍ରାଣପ୍ରିୟା । ମୁଁ ସେ କଥା ସଙ୍ଗେ ସଙ୍ଗେ କରୁଛି କି ନାହିଁ ଦେଖିବ । ମୋ ଉପରେ ସନ୍ଦେହ କାହିଁକି ?"

"କ'ଣ ହେଲା, ହଠାତ୍ ଏତେ ଗମ୍ଭୀର ଓ ଚିନ୍ତିତ ହୋଇଗଲ ଯେ ? ଦେହ ଭଲ ଅଛି ତ ?" ରାମ ପଚାରିଲା ।

"ନା, ମୋର ଦେହ୍ମ ଇଚ୍ଛା ।"

"କୁହନା ପ୍ରିୟେ ।"

"ପ୍ରଥମେ ଶପଥ କର୍ ଯେ ତାକୁ ତୁମେ ପୂରଣ କରିବ ।"

"ଧେତ୍ ଲଭ ; ଏ ହବୁ କ'ଣ ? ପିଲଙ୍କ ଭଳି କଥା କହୁଛୁ !

ମୁଁ ତୋତେ ଏ ପର୍ଯ୍ୟନ୍ତ କଛୁ ମନା କରିଛୁ ? ···ଏ ମୁହୂର୍ତ୍ତ ପର୍ଯ୍ୟନ୍ତ··· ?"

"ନା ; ଏହା ଗୋଟିଏ ସମ୍ପୂର୍ଣ୍ଣ ଅଲଗା କଥା···ହବୁ କଥାଠୁ ବ୍ୟତକ୍ରମ ।"

"ଆଗେ କୁହନା ; ତା'ପରେ ମୁଁ ମୋର ସମ୍ମତ ଦେବ ।"

"ତୁମେ ପାରିବ ପ୍ରିୟ, ତୁମେ ପାରିବ ।"

"ତେବେ ଆରମ୍ଭ କର ।"

"ମାତ୍ର ତୁମେ ମୋ ନିକଟରେ ଶପଥ କରିନାହଁ ଏ ଯାଏଁ ।"

ରାମ ଉଚ୍ଚସ୍ୱରରେ ହସିବାକୁ ଲଗିଲ । "ତୋର ଆଜ ହୋଇଛୁ କ'ଣ ? ପିଲଙ୍କ ଭଳି ······ଠିକ୍ ଅଛୁ । ମୁଁ ଶପଥ କରୁଛୁ ।"

"ରାମ ! ମୋର ଗୋଟିଏ ସନ୍ତାନ ଦରକାର ।"

ରାମ ସ୍ତବ୍ଧ ହୋଇ ରହିଗଲ । "ତୁ କ'ଣ କାହାକୁ ପୋଷ୍ୟପୁତ୍ର କରିବାକୁ ଚାହୁଁଛୁ ?" ତା' କଣ୍ଠରେ ଦୁଃଖମିଶ୍ରିତ ଭାଷା ।

"ନା······ ।"

"ତେବେ ?"

କହିବାକୁ ତା' ମନରେ କୁଣ୍ଠା ଓ ଭୟ ।

"ତେବେ କ'ଣ ଲଭ ?"

ସେ ତା' ନିକଟକୁ ଲଗି ଆସିଲ ଏବଂ କାନରେ ନିଜ ଓଠକୁ ରଖି ଅତ୍ରେ ଅତ୍ରେ କହିଲ, "ମୁଁ ଯାହା କହିବ ସେଥିରେ ତୁମେ ଆଦୌ ରାଗିବନ । ବହୁ ଭାବଚନ୍ତ ମୁଁ ଏକଥା କହିବାକୁ ଯାଉଛୁ । ତୁମେ ଜାଣ ମୁଁ ଆଦୌ ଚଞ୍ଚଳ ବା ତରବରିଆ ନୁହେଁ । ଧୈର୍ଯ୍ୟ ଧର ଶୁଣ । ଏବଂ ମନେରଖ··ତୁମେ ମୋର ଇଚ୍ଛାକୁ କାର୍ଯ୍ୟକାରୀ କରିବା ପାଇଁ ଶପଥ ନେଇଛ ।" ତା'ପରେ ସେ କହିବାକୁ ଆରମ୍ଭ କଲ ।

"ତୁମେ ଜାଣ, ବାପା ନାତି ଦେଖିବାକୁ କେତେ ବ୍ୟାକୁଳ ଥିଲେ । ତାଙ୍କର ଶେଷ ଇଚ୍ଛା ବାସ୍ତବିକ ମୋତେ ବ୍ୟସ୍ତ କରିଥିଲା ; ଭାବିବାକୁ ପଡ଼ିଥିଲା, ଚିନ୍ତା କରିବାକୁ ହୋଇଥିଲା ଏବଂ ଶେଷକୁ ଏକ ନୂଆ ରାସ୍ତା ଖୋଜି ବାହାର କରିବାକୁ ପଡ଼ିଥିଲା । ତୁମକୁ ଜଣା, ମୁଁ ନିଜେ ସନ୍ତାନ ଧାରଣ କରି ପାରିବିନି । ମୁଁ ଏକଥା ଦୀର୍ଘ କେତେଦିନ ଧରି, ବର୍ଷ ବର୍ଷ ଧରି ଭାବିଛି । ତୁମେ କିନ୍ତୁ ସନ୍ତାନର ପିତା ହୋଇ ପାରିବ ପ୍ରିୟ । ଅନ୍ୟ କାହା ସନ୍ତାନକୁ ପୋଷ୍ୟପୁତ୍ର କରିବା ଅପେକ୍ଷା, ତୁମ ଔରସରୁ ଜାତ ସନ୍ତାନଟିଏ ଆମେ ନ ପାଳିବା କାହିଁକି ? ପୁରାପୁରି ଅଲଗା ଜଣକ ସନ୍ତାନକୁ ପୁଅ କରିବା ଅପେକ୍ଷା ଏହା କ'ଣ ତା'ଠାରୁ ଭଲ ନୁହେଁ ? ରାମ ; ମୁଁ ଯାହା କହିଲି ତୁମେ ବୁଝି ପାରୁଛ ?"

ରାମ ତାକୁ ଅତି ଆବେଗ ସହ ନିଜ ଆଲିଙ୍ଗନ ପାଶରେ ଭିଡ଼ିଧରି ବଡ଼ ପାଟିରେ କହି ଉଠିଲା, "ତୁମେ କ'ଣ କହୁଛ ଲିଭି ?"

"ଧୈର୍ଯ୍ୟ ଧରି ଶୁଣ । ମୁଁ ତୁମ ସନ୍ତାନକୁ ନିଜ ପେଟରେ ଧାରଣ କରି ପାରିବିନି । ମାତ୍ର ଅନ୍ୟ କେହି ଝିଅ ତ ତୁମ ସନ୍ତାନକୁ ଗର୍ଭରେ ଧରି ପାରିବ । ନୁହେଁକି ?"
ରାମର ହଠାତ୍ ସେହି ଦିନମାନଙ୍କରେ ଇଂରାଜୀ ଖବର କାଗଜରେ ପ୍ରକାଶିତ ହୋଇଥିବା ଚମକପ୍ରଦ "ଟେଷ୍ଟ ଟ୍ୟୁବ ବେବି" ସମ୍ବାଦ କଥା ମନେ ପଡ଼ିଗଲା ।
"ଲିଭି, ତୁମେ କ'ଣ ଟେଷ୍ଟ ଟ୍ୟୁବ୍ ବେବି କଥା କହୁଛ କି ?"

"ନାଁ ନାଁ ମୁଁ କେତେ ଦୂର ଯାଉନାହିଁ । ଟେଷ୍ଟ ଟ୍ୟୁବ୍ ବେବି କଥା କହୁନାହିଁ । ମୋ ମତରେ କୃତ୍ରିମ ବୀର୍ଯ୍ୟବପନ ।"

ନିଜକୁ ଲିଭିର ବନ୍ଧନରୁ ମୁକ୍ତକରି ହଠାତ୍ ଉଠିପଡ଼ି ଚିତ୍କାର କରି ଉଠିଲା ରାମ, "କ'ଣ କହୁଛ ଲିଭି !"

"ଉତ୍ତେଜିତ କାହିଁକି ହେଉଛ ? ଯଦି ତୁମେ ପ୍ରକୃତରେ ମୋତେ ଭଲ ପାଅ, ତେବେ ମୋର କଥାକୁ ମନଦେଇ ଶୁଣ । କୌଣସି ଏକ ସ୍ତ୍ରୀଲୋକ ତୁମ ସନ୍ତାନକୁ ତାର ଜଠରରେ ଦଶମାସ ଧାରଣ କରିବ । ତା'ପରେ ସନ୍ତାନଟି ଆମର । ରାମ, ଧୈର୍ଯ୍ୟଧରି ଚିନ୍ତା କର । ପ୍ଲିଜ୍, ଉତ୍ତେଜିତ ହୋଇ ପଡ଼ନା ।"

ସୀମ ପଛକୁ ଘୁଞ୍ଚିଯାଇ ପୁଣି ଚିତ୍କାର କଲା, ହେ ଭଗବାନ ' ଏହା କେତେ ଗର୍ହିତ କାର୍ଯ୍ୟ ଲଭ । ଏଭଳି ନିକୃଷ୍ଟ କଥା ତୁ କେମିତି ଚିନ୍ତା କରି ପାରିଲୁ ।”

“କେଉଁ କାର୍ଯ୍ୟ ଅସମ୍ଭବ ଓ ନିକୃଷ୍ଟ ? ଏହା ଠିକ୍ ରକ୍ତ ଦେବା ପରି ଏକ କାର୍ଯ୍ୟ । ତୁମେ ବହୁ ସମୟ ବ୍ଲଡ଼ବ୍ୟାଙ୍କକୁ ରକ୍ତ ଦେଉଛ । ତୁମେ କେବେ ଚିନ୍ତା କରିଛ କି ତୁମ ରକ୍ତ କେଉଁଠିକି ଯାଉଛି ? କୌଣସି ଚରିତ୍ରହୀନା ଝିଅ ବା କେଉଁ ବୃଦ୍ଧ ନିକଟକୁ ? ଏଭଳି ଇନ୍‌ସେମିନେସନ୍ ପ୍ରାକ୍‌ଟିସ୍ ପାଶ୍ଚାତ୍ୟ ଦେଶରେ ବହୁଳ । ଏଥିରେ ଭୁଲ୍ କେଉଁଠି ରହିଲା ସୀମ ! ଏହା ସ୍ୱେଚ୍ଛାଗ୍ରହୃତା ନୁହେଁ, ବା ଯୌନ-ଲାଳସା ଉପଭୋଗ ନୁହେଁ । ତୁମେ ରକ୍ତ ଦେଇ ଅସୁସ୍ଥ ବ୍ୟକ୍ତିଙ୍କୁ ରକ୍ଷା କରୁଛ । ଠିକ୍ ? ଏହି କାର୍ଯ୍ୟ କରିବାଦ୍ୱାରା ତୁମେ ଏକ ଦମ୍ପତିଙ୍କର ଭଗ୍ନ ହୃଦୟକୁ ରକ୍ଷା କରୁଛ ; ବିବାହିତ ଦମ୍ପତିଙ୍କୁ ଅଦାଲତ ବିଚ୍ଛେଦରୁ ରକ୍ଷା କରୁଛ ; କାହାକୁ ମାନସିକ ପାଗଳାମିରୁ ରକ୍ଷା କରୁଛ···ଗୋଟିଏ ଇଞ୍ଜେକ୍‌ସନ୍ । ବାସ୍ ହେଉଳି । ସେତିକିରେ ତୁମର ଦାୟିତ୍ୱ ଶେଷ । ଆଉ କିଛି ନାହିଁ । ତୁମେ ଡାକ୍ତରଙ୍କୁ ଦେଖା କରିବ ଏବଂ ସେତିକିରେ ତୁମ କାମ ଶେଷ । ମୁଁ କ’ଣ କହୁଛି କି ; ସେ ଝିଅଟି କିଏ ? କ’ଣ କରେ ? କଳା ବା ଧଳା ? ତୁମର ଏଥିରେ ଚିନ୍ତା କରିବାର ନାହିଁ । ଦଶମାସ ପରେ ମୁଁ ତୁମକୁ ଆମ ସନ୍ତାନକୁ ଦେଖାଇବି । ବାସ୍, ସେତିକି । ଯନ୍ତ୍ରଣା ନାହିଁ, କୌଣସି ଅସୁବିଧା ନାହିଁ । ତୁମ ପାଇଁ ବ୍ୟସ୍ତ ବା ବିବ୍ରତ ହେବାର କିଛି କାରଣ ନାହିଁ । ଏ କିଛିବର୍ଷ ହେଲା, ମୁଁ ତୁମକୁ ଏ ବିଷୟରେ ଥରେ ହେଲେ କିଛି ମାଗିନି । ମୁଁ ତୁମ ନିକଟରେ ହୋଡ଼ହାତ ଭିକ୍ଷା ମାଗୁଛି ; ଦୟାକରି ମୋର ଆଶା ପୂରଣ କର । ମୋର ବଳବତୀ ଇଚ୍ଛାକୁ ପୂରଣ କରିଦିଅ । ତୁମେ ମୋ ନିକଟରେ ଆଗରୁ ଶପଥ କରିଛ । ତାହା ଭୁଲି ଯାଅନି ସୀମ ।” ଲାବଣ୍ୟ କାକୁତି ମିନତି କରି କହିଲା ।

ସୀମ କିଛି ସମୟ ଚୁପ୍ ରହିସିବାରୁ ଲାବଣ୍ୟ କାନ୍ଦିବାକୁ ଆରମ୍ଭ କରିଦେଲା ।

“ହେ ଭଗବାନ ! ଭଗବାନ ।” ସୀମ ଚିତ୍କାର୍ କରୁଥିଲା । ସେ ପାଖରେ ଥିବା ଷ୍ଟୁ’ ଟେବୁଲକୁ ଗୋଇଠା ମାରି ଗଡାଇ ଦେଲା । ଘରର ଦୁଆରକୁ ଖୋଲି ପିଟିବାକୁ ଲାଗିଲା । କ’ଣ କରିବ ସ୍ଥିର କରି ନ ପାରି ହଠାତ୍ ଘର ଭିତରୁ ବାହାରକୁ ସେ ଚାଲିଗଲା ।

ତା'ପରେ ଦୁଇଦିନ ସବୁକିଛି ନୀରବ । ଲବଣ୍ୟ ଓ ରାମ ଭିତରେ କଥାବାର୍ତ୍ତା ବନ୍ଦ ! ଲଭିକୁ ଦୁଃଖରେ ଭାଙ୍ଗି ପଡ଼ିବା ଦେଖିବାକୁ ଇଚ୍ଛା ନ କରି ତୃତୀୟ ଦିନ ରାମ ଉପରେ ପଡ଼ି କହିଲା, ଆମେ ଏଭଳି କାହିଁକି ହଇରାଣ ହେବା । ତୁମେ ତୁମର ଅନୁରୋଧକୁ ଭୁଲିଯାଅ ଲଭି ; ମୁଁ ମଧ୍ୟ ସବୁକଥା ଭୁଲିଯିବ ।"

"ମାନେ ତୁମେ ଶପଥ କରୁଛ । କିପରି ତାହାକୁ ଭାଙ୍ଗିବ ?"

"ପୁଣି ଶପଥ । ମୋର ପ୍ରତିଜ୍ଞା ନର୍କରେ ପଡ଼ୁ । ତୁମର ଇଚ୍ଛା କ'ଣ ନ ଜାଣି ମୁଁ କେମିତି ଶପଥ କରିବି ।"

"....................."

ତା'ର କାନ୍ଦଣା ରାମର ରାଗକୁ ଆହୁରି ବଢ଼ାଇ ଦେଲା । ସେ ରାଗରେ ଉପର ମହଲକୁ ଚାଲିଗଲା ।

ଲବଣ୍ୟର ଧାରାବାହିକ ହୃଦୟ ବିଦାରକ ଯନ୍ତ୍ରଣା ରାମ ପ୍ରତି ଥିଲା ଅସହ୍ୟ । ସେ ଖାଉ ନ ଥିଲା । ଶେଯରେ ମୁହଁମାଡ଼ି ସବୁବେଳେ ଶୋଇ ରହୁଥିଲା । ସେ ତା ପରଦିନ ପୁଣି ଲବଣ୍ୟ ପାଖକୁ ଆସିଲା । ତା'ର ଦୁଃଖ ସେ ସହି ପାରିଲାନି ।

"ଠିକ୍ ଅଛି । ମୋତେ କ'ଣ କରିବାକୁ ହେବ ?" ଶେଷରେ ରାମ ପଚାରିଲା ।
ରାମ କଥାରେ ଲବଣ୍ୟ ଆନନ୍ଦରେ ଅଧିର ହୋଇ ଉଠିଲା, "ବର୍ତ୍ତମାନ କିଛି ନୁହେଁ, ମୋ ଉପରେ ସବୁ ଛାଡ଼ିଦିଅ ।"

"ତୁମର ଆଶା କ'ଣ ଏତେ ଶୀଘ୍ର ଫଳବତୀ ହେବ ?"

"କାହିଁକି ନୁହେଁ ? ମୁଁ ଡାକ୍ତରଙ୍କ ସହ ପରାମର୍ଶ କରି ସାରିଛି । ଆଉ କାହାକୁ କିଛି ଜଣାଇବିନି । ରାମ, ମୁଁ ଗୋଟିଏ ଝିଅ ମଧ୍ୟ ସ୍ଥିର କରିଛି । ତୁମକୁ ଗୋଟିଏ ଦିନ ନର୍ସିଂହୋମ୍ ଯିବାକୁ ହେବ ଯାହା । ତା'ପରେ କଥା ଆଉ ସରିଗଲା । ଦୟାକରି ପ୍ରିୟତମ ; ରାଜି ହୋଇଯାଅ । ଗୋଟିଏ ବର୍ଷ ଭିତରେ ଆମେ ଆମର ସନ୍ତାନ ପାଇବା । ଭାବିଲେ କେତେ ଆଶ୍ଚର୍ଯ୍ୟ ଲାଗୁଛି, କହିଲ !"

ସନ୍ତାନଟିଏ ପାଇବାର ଲାଳସାରେ ନିଜେ ସେ ସନ୍ତାନ ଧାରଣ କରି ପାରିବନି ଏକଥା ଭୁଲି ଯାଇଥିଲା ଏବଂ ଅନ୍ୟ ସ୍ତ୍ରୀ ସାହାଯ୍ୟରେ ନିଜ ସ୍ୱାମୀର ସନ୍ତାନକୁ ପାଇବାକୁ ସେ ଥିଲା ବଦ୍ଧପରିକର । ରାମ ହୃଦୟକୁ ଏହା ଛୁଇଁ ଯାଇଥିଲା । "ତୁମ

ପାଇଁ ମୁଁ ନିଶ୍ଚିତ୍ତ କରି ପାରିବ । ମୁଁ ତୁମକୁ କେତେ ଭଲ ପାଏ, ଲଭ ।" ସେ ଏହା କହି ତା'ର ବାଳକୁ ନିଜ ହାତରେ ଆଉଁସି ଦେବାକୁ ଲାଗିଲା ।

ସ୍ୱାମୀଙ୍କର ସମ୍ମତିରେ ଉଚ୍ଛୁଳିତ ହୋଇ, ଲାଭ ଡାକ୍ତର ସୁଶୀଲାଙ୍କ ନିକଟକୁ ପରାମର୍ଶ କରିବାକୁ ତାଙ୍କ ସଙ୍ଗେ ଗଲା ।

"ଲାଭ, ତୁମେ ସେହି ଝିଅଟିକୁ ଏଠାକୁ ଆଣ । ମୁଁ ପ୍ରଥମେ ତାକୁ ସବୁମତେ ପରୀକ୍ଷା କରିବି । ତା' ଦେହରେ କୌଣସି ରୋଗ ନ ଥିବ କିମ୍ବା ସେ ଶାରୀରିକ ଅକ୍ଷମ ହୋଇ ନ ଥିବ । ତାକୁ ନଅମାସ ନିୟମିତ ଚିକିତ୍ସାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରଖିବାକୁ ହେବ । ପ୍ରତ୍ୟେକ ଦିନ ତା' ଉତ୍ତାପର ମାପ ନେବାକୁ ହେବ ଓ ତା'ର ଯକୃତକୁ ପରୀକ୍ଷା କରିବାକୁ ହେବ । ଏକ ନିର୍ଦ୍ଦିଷ୍ଟ ତାରିଖ ସ୍ଥିର କରି ଗର୍ଭାଧାନ ନିମିତ୍ତ ଔଷଧକୁ ପ୍ରୟୋଗ କରିବି ।"

ଯାହା ଯାହା ଡାକ୍ତର ଲାବଣ୍ୟଙ୍କୁ କହିଲେ, ସେ ତାହା ଧମୁକୁ କହିଲା ।
"ଇଞ୍ଜେକ୍‌ସନ୍ ଦେବାକୁ ପାଖ ତିନିମାସ ଦରକାର । ସେହି ସମୟରେ ତା'ର ନର୍ସିଂ ହୋମ୍‌ରେ ରହିବାର ଆବଶ୍ୟକତା ନାହିଁ । ତେଣୁ ଆମକୁ ଗୋଟିଏ ଘରଭଡ଼ା ନେବାକୁ ହେବ । ତାକୁ ସେହି ନର୍କରୁ ଉଠାଇ ଆଣିବାକୁ ପଡ଼ିବ । ମୁଁ ଚାହେଁନା, ସେ ପରିବେଶ ମଧ୍ୟରେ ସେ ରହୁ ।"

ଧମୁ ସେଦିନ ମେନକାକୁ ଦେଖାକଲା ଏବଂ ତାକୁ ଦୁଇ ହଜାର ଟଙ୍କା ଦେଇ ତା'ର ସମସ୍ତ ଋଣ ସୁଝିଦେଇ ନୂଆ ଘରରୁ ସପ୍ତାହକ ମଧ୍ୟରେ ଯିବାକୁ ପ୍ରସ୍ତୁତ ହେବାକୁ କହିଗଲା ।

ଖୁବ୍ ଶୀଘ୍ର ସେମାନେ କଳାକ୍ଷେତ୍ର କଲୋନୀଠାରେ ନିର୍ଜ୍ଜନିଆ ଜାଗାରେ ଗୋଟିଏ ଘର ସ୍ଥିର କଲେ । ଗୋଟିଏ ବିବାହିତ ଦମ୍ପତି ଦୁଇ ବର୍ଷ ବିଦେଶ ଯାତ୍ରାରେ ଯାଉଥିବାରୁ ସେ ଘରଟିକୁ ଭଡ଼ାରେ ଦେବାକୁ ରାଜିହେଲେ । ଘରଟି ଭିତରେ ଉନ୍ନତ ସାଜସଜ୍ଜା ସହିତ ଟେଲିଫୋନ୍ ଲାଗିଥିଲା । ଲାବଣ୍ୟ ଘରଟିକୁ ଦେଖି କହିଲା

ଖୁସିହେଲା । ମାସକୁ ଭଡ଼ା ଆଠ ଶହ ଟଙ୍କା । ପ୍ରଥମେ ଛଅ ମାସ ଭଡ଼ା ଆଗରୁ ଦେଇ ପ୍ରଥମ ସମସ୍ୟାକୁ ସେ ସମାଧାନ କରିପାରିଲା ।

ମାତ୍ର ମେନକାକୁ ଏକା ରଖାଯିବ କିପରି ? ତା' ସହିତ କଥା ହେବାପାଇଁ, ତା'ର ଭଲମନ୍ଦ ବୁଝିବାପାଇଁ ଜଣେ ଲୋକ ଦରକାର ।

ଧମୁ ତା' ଅଫିସ ପିଅନର ବୁଢ଼ୀମାକୁ ଏ କାର୍ଯ୍ୟରେ ନିଯୁକ୍ତ କଲା । ସେ ଥିଲା ଉତ୍ତମ ସ୍ୱଭାବର ଦାୟିତ୍ୱସମ୍ପନ୍ନା ଜଣେ ସ୍ତ୍ରୀ ଲୋକ ।

ବୃଦ୍ଧାଟି ଲବଣ୍ୟର ସହରକୁ ଆସିଲା ।

ତା' ପରଦିନ ମେନକା ସେଇ ଅପରିଚ୍ଛନ୍ନ ଗଳି ଛାଡ଼ି ଆସିଲା ସେହି ନୂଆ ଘରଟିକୁ, ତା'ର ସମସ୍ତ ଜିନିଷକୁ ଗୋଟିଏ ବାକ୍ସରେ ବନ୍ଦକରି ।

ସେଦିନ ସନ୍ଧ୍ୟା ଛ'ଟାରେ ଲବଣ୍ୟ ତାକୁ ନେଇଗଲା ଡାକ୍ତରଙ୍କ ପାଖକୁ । ତା'ର ରକ୍ତ, ମୂତ୍ର ଓ ଧାତୁ ପରୀକ୍ଷା, ଇତ୍ୟାଦି ଯାବତୀୟ ସାଧାରଣ ଶରୀରଗତ ପରୀକ୍ଷା କରାଗଲା ।

ତିନି ଦିନ ପରେ ଦେଖାଗଲା ତା'ର ସ୍ୱାସ୍ଥ୍ୟ ସମ୍ପୂର୍ଣ୍ଣ ଠିକ୍ ।

"ସବୁ ଠିକ୍ ଅଛି ! ବର୍ତ୍ତମାନ ଆମେ ଏ କାର୍ଯ୍ୟରେ ଆଗେଇ ପାରିବା ।" ଡାକ୍ତର ମତଦେଲେ ।

ମେନକାର ଋତୁସ୍ରାବକୁ ପରୀକ୍ଷା କରାଗଲା । ଡାକ୍ତର ବହୁତ ଖୁସି । ସେ ତାକୁ ନିଜ ଶରୀରର ଉତ୍ତାପ ଓ ଅନ୍ୟାନ୍ୟ ପରିବର୍ତ୍ତନ ପ୍ରତି ଲକ୍ଷ୍ୟ ରଖିବାର ଟ୍ରେନିଂ ଦେଇଦେଲେ ।

ବ୍ଲଡ଼ପ୍ରେସର୍‌ରେ କୌଣସି ଗୋଳମାଳ ଥିବା ଦେଖାଗଲାନି । ସମକୁ ଅଲଗା ହସ୍‌ପିଟାଲକୁ ଅଣାଗଲା । ତା'ର ରକ୍ତ ପରୀକ୍ଷା କରି ସବୁ ଠିକ୍ ଥିବାର ମଧ୍ୟ ଦେଖାଗଲା ।

ତୁଇ ମାସ ପରୀକ୍ଷା ନିରୀକ୍ଷା ପରେ, ମେନକାର ତୃତୀୟ ମାସ ଋତୁ ସ୍ରାବର ଚଉଦ ଦିନ ଡାକ୍ତର ମେନକା ଗର୍ଭକୁ ଦଶ ମିଲିଗ୍ରାମ ହେବ ସମର ବୀର୍ଯ୍ୟକୁ ଇଞ୍ଜେକ୍‌ସନ୍ ଦ୍ୱାରା ନିକ୍ଷେପ କଲେ ।

ଚଉଦ ଦିନ ବିତିଗଲେ । ଲାବଣ୍ୟ ଅସ୍ଥିର ହେଲେ କ'ଣ ତା' ଯୋଜନା ସଫଳ ହେବ ?

ପୁଣି ଚଉଦ ଦିନ ଗଡ଼ିଗଲା । ମେନକା ଗର୍ଭାଧାନ କରିଛି, ଏଥିରେ କୌଣସି ସନ୍ଦେହ ରହିଲାନି । ମେନକାର ଗର୍ଭାଧାନ ପରୀକ୍ଷା କରି ସବୁ ଠିକ୍ ଥିବାର ଲକ୍ଷ୍ୟ କରାଗଲା । ସେଦିନ ରାତି ଥିଲା ଲାବଣ୍ୟ ପାଇଁ ଆନନ୍ଦର ଦିନ । ଆନନ୍ଦାଶ୍ରୁ ବହି ଚାଲିଥିଲା ତା'ର ଆଖିରୁ ତକିଆ ଓଦା କରି ।

ସେ ନିଜକୁ କାହିଁକି ଦୀର୍ଘ ଛଅ ମାସ ଧରି ଗାଳି ଦେଉଥିଲା—ରାମ ସବୁ ବୁଝି ପାରୁଥିଲା ମାତ୍ର ତାକୁ ପଚାରିବାକୁ ତା'ର ସାହାସ ଅଣ୍ଟୁ ନ ଥିଲା ।

ଛଅ ମାସ ଧରି ପରୀକ୍ଷା ନିରୀକ୍ଷା ଏବଂ ତା'ର ମାନସିକ ଦୁଶ୍ଚିନ୍ତା ।

ଏହି ଯୋଜନାକୁ କେହି ନ ଜାଣନ୍ତୁ, ଲାବଣ୍ୟ ସେଥିପାଇଁ ନିଜେ ଗାଡ଼ି ଚଳାଇ ଯାଏ ଡ୍ରାଇଭରକୁ ବିଶ୍ରାମ ଦେଇ । ସେତେବେଳକୁ ଡ୍ରାଇଭର ମଧ୍ୟ ଗ୍ୟାରେଜ୍‌ରେ ବିଶ୍ରାମ କରିବାକୁ ଅଭ୍ୟସ୍ତ ହୋଇଯାଇଥିଲା ।

"କେଉଁଠିକି ଏତେ ବ୍ୟସ୍ତତା ଭିତରେ ଗାଡ଼ି ନେଇ ଯାଉଛ ? ନିଜକୁ ଏତେ କଷ୍ଟ କାହିଁକି ଦେଉଛ ?" ରାମ ସମୟ ସମୟରେ ଏକଥା ପଚାରିବାକୁ ଉଦ୍ୟତ ହୋଇ ପଡ଼ୁଥିଲା ମାତ୍ର ପର ମୁହୂର୍ତ୍ତରେ ତା'ର ଭୟଙ୍କର ଯୋଜନା କଥା ତା'ର ମନେ ପଡ଼ିଗଲେ ସେ ହେଉଥିଲା ନୀରବ ।

ଲାବଣ୍ୟର ଉତ୍ତେଜନା ଓ ଅକ୍ଲାନ୍ତ ପରିଶ୍ରମ ରାମକୁ ଯଦିଓ ବହୁତ ବାଧୁଥିଲା, ମାତ୍ର ସେ କିଛି କହୁ ନ ଥିଲା । ଲାବଣ୍ୟ ପିଲାଟିଏ ପାଇବା ପାଇଁ କେତେ ବ୍ୟାକୁଳ ତା' ସେ ଜାଣିଥିଲା ।

ଦିନେ ସେ ରାମକୁ ରକ୍ତ ପରୀକ୍ଷା କରିବାକୁ ହସ୍‌ପିଟାଲ୍ ଆସିବାକୁ ଅନୁରୋଧ କଲା । ସେ ତା' କଥା ମାନିଲା । ସେ ଜାଣେ ଏଥିଲାଗି ତା'ର ଆତ୍ମୋତ୍ସର୍ଗ କେତେ । ସେ ଜାଣେ ଏ କାର୍ଯ୍ୟ ସେ ଲାବଣ୍ୟର ଆତ୍ମତୃପ୍ତି ପାଇଁ, ତା'ପ୍ରତି ଥିବା ଗଭୀର ପ୍ରେମ ଓ ଭଲପାଇବା ପାଇଁ ଏବଂ ସର୍ବୋପରି ନିଜ ଶପଥକୁ ରଖିବାପାଇଁ ସେ

କରୁଥିଲା । ମାତ୍ର ଯେଉଁଦିନ ଗର୍ଭାଧାନର ସମସ୍ତ ସଂଶୟ ତୁଟିଗଲା ଏବଂ ଲାବଣ୍ୟ ଖୁସିରେ ଚିତ୍କାର କରି ଉଠିଥିଲା ସେଦିନ ସନ୍ଧ୍ୟା ପାରି ନ ଥିଲ ରାମ ।

"ଏହା କ'ଣ ପ୍ରିୟେ ?" ତାକୁ ନିଜ କୋଳ ଭିତରକୁ ଖୁସିରେ ଟାଣିନେଇ ସେ ପଚ୍ଚରିବାର ସାହସ କରିଥିଲା ।

"ତା'ର ଗର୍ଭାଧାନ ଘଟିଛି । ସଂଶୟ ନାହିଁ ।" ସେ ପ୍ରଗଳଭ ହୋଇ କହିଲା ।
"ହଁ, ତାହାହେଲେ ଏଇଥ...।"

ହଠାତ୍ ରାମ ମଧ୍ୟ ଖୁସିହୋଇ ଉଠିଲା—କିନ୍ତୁ ପରେ ପରେ ଗୁଡ଼ାଏ ଏଣୁ ତେଣୁ ଭାବନା ତା ମନକୁ ଅଛନ୍ନ କରି ପକାଇଲେ ।

ସେ ଅସ୍ଥିର ହୋଇ ଉଠିଲା ଯେ ତାର ସନ୍ତାନ କୌଣସି ଏକ ନାରୀର ଗର୍ଭ ଦେହରେ ବଢ଼ୁଛି, ଯାହାକୁ ସେ ଦେଖିନି ଏପର୍ଯ୍ୟନ୍ତ । ତାର ମନସ୍କାମନା ଏବେ ଦିନରେ ପୂର୍ଣ୍ଣ ହେବ । ସେ ହେବ ପିତା, ସନ୍ତାନର ଜନକ । ଏ ଚିନ୍ତାରେ ଆନନ୍ଦରେ ଅଭିଭୂତ ହୋଇପଡ଼ିଲା । ତାର ସମଗ୍ର ଶରୀରରେ ଶିହରଣ ସୃଷ୍ଟି ହେଉଥିଲା । ଲାବଣ୍ୟକୁ କୋଳରେ ଧରି ମଧ୍ୟ ସେ କ୍ଷଣକ ପାଇଁ ଅନ୍ୟମନସ୍କ ହୋଇ ପଡ଼ିଲା ।

× × ×

ଦ୍ୱିତୀୟ ମାସର ଗର୍ଭଧାନ ସଙ୍କଟ ସୁରୁଖରୁରେ ଦୂରେଇ ଗଲା । ମେନକାର ଦୁର୍ବଳତା ସକାଳୁ ବଢିବାକୁ ଲାଗିଲା । ତାର ମୁଣ୍ଡ ବୁଲାଇଲା । ନିଜ ଖାଇବା ସେ ଖାଇ ପାରିଲା ନାହିଁ । ସେ ନିଦୁଆ ଅନୁଭବ କଲା; ତାର ଶାରୀରିକ ପରିବର୍ତ୍ତନ ଦେଖି ଲାବଣ୍ୟର ବ୍ୟଗ୍ରତ ଓ ବ୍ୟସ୍ତତା କ'ଣ ବା କୁହାଯାଇପାରେ ! "ତା'ର ଗର୍ଭ-ହୋଇଛି ମାତ୍ର ତୁ ଯେପରି ତା'ର ଯନ୍ତ୍ରଣା ଭୋଗ କରୁଛୁ ।" ଧମୁ ଥଟ୍ଟାରେ କହେ । ମାତ୍ର ସେ ଉତ୍ତର ଦେଲା, "ମୁଁ ତା'ର ସମସ୍ତ ଯନ୍ତ୍ରଣାକୁ ଅନୁଭବ କରିବାକୁ ଚେଷ୍ଟା କରୁଛି କାରଣ ମୋର ତୃପ୍ତି ପାଇଁ ସେ ଗର୍ଭବତୀ, ମୁଁ ମେନକା ସହିତ ମାତୃତ୍ୱର ଗୌରବ ପାଇବାକୁ ଯାଉଛି ।"

ତାର ଏପ୍ରକାର ଆନ୍ତରିକତାରେ ଧମୁ ମୁଗ୍ଧ ହୋଇଯାଏ । ଶେଷରେ ଧମୁ ତାକୁ ଥଟ୍ଟାକରିବା ବନ୍ଦ କରି ଦେଇଥିଲା ।

ତୃତୀୟ ମାସ ବେଳକୁ ମେନକାକୁ ଅପର୍ଯ୍ୟାପ୍ତ ଫଳ ଖାଇବାକୁ ଦିଆଗଲା । ଆଇରନ୍, ମଲ୍ଟିଭିଟାମିନ୍, କ୍ୟାଲ୍ସିୟମ୍, ପିଲ୍, ଇତ୍ୟାଦି, ପର୍ଯ୍ୟାପ୍ତ ମାତ୍ରାରେ । ଲାବଣ୍ୟ ତାକୁ ସମୁଦ୍ର କୂଳକୁ ନେଇ ଯାଉଥିଲା ଏବଂ ବହୁଦୂର ପର୍ଯ୍ୟନ୍ତ ଚାଲିବାକୁ ବାଧ୍ୟ କରୁଥିଲା । ତାର ଅନୁପସ୍ଥିତ ସମୟରେ ଶୁକବାଣୀକୁ ସମୁଦ୍ର-କୂଳରେ ବୁଲାଇ ଆଣିବାକୁ ନିର୍ଦ୍ଦେଶ ଦେଇଥିଲା ଲାବଣ୍ୟ ।

ସେ ଫୋନ୍‌ରେ ତା କଥା ବାରମ୍ବାର ପଚାରି ବୁଝୁଥିଲା । ରାମ ବାହାରକୁ ଯାଇ-ଥିଲେ, ସେ ବହୁତ ସମୟ ମେନକା ସହିତ ହିଁ କଟାଉଥିଲା । ମାତ୍ର ରାମ ସହରରେ ଥିଲେ, ତା କାର୍ଯ୍ୟକ୍ରମ ଥିଲା ଅଲଗା । ସେ ବହୁ ସାବଧାନତା ଅବଲମ୍ବନ କରୁଥିଲା । ରାମ ଯେପରି ମେନକାର ସ୍ୱର ନ ଶୁଣେ । ସେ କ'ଣ ତା'ର ସ୍ୱାମୀଙ୍କୁ ଶପଥ କରି କହି ନ ଥିଲା ତାକୁ କୌଣସି ଅସୁବିଧା ହେବାକୁ ଦେବନି ବୋଲି ।

ପ୍ରଥମ ଦିନରୁ ଶୁକବାଣୀକୁ ଟେଲିଫୋନ୍ କରିବାକୁ ସେ ମନା କରିଥିଲା । "ମୁଁ ତୋତେ ଦିନକୁ ଚାରିଥର ଫୋନ୍ କରି ଡାକିବି । ଯଦି ଦରକାର ପଡ଼େ, ତେବେ ମୋତେ ଫୋନ୍ କରିବୁ ; ଯଦି ଅନ୍ୟ କେହି ଫୋନ୍ ନିଏ ତାକୁ କହିବୁ ଆଡ୍ରେସ୍ରୁ ଫୋନ୍ କରୁଥିଲୁ ଏବଂ ଟେଲିଫୋନ୍ ରଖିଦେବୁ । ମୁଁ ଆସିଲେ ଫୋନ୍ କରିବି, ବୁଝିଲୁ ?"

ପ୍ରଥମ ଦୁଇମାସ ମେନକା ଲାବଣ୍ୟର ସବୁକଥା ମାନି ଚାଲିଲା । ମାତ୍ର ତା ପରେ ସେ ଲାବଣ୍ୟକୁ ହଇରାଣ କରିବାକୁ ଲାଗିଲା । "ମୁଁ ବଡ଼ ବୋର୍ ହେଉଛି । ସିନେମା ଦେଖି ପାରେ କି ? ସେ ମ୍ୟାଗାଜିନ୍ ବା ଏ ମ୍ୟାଗାଜିନ୍‌ଟା ଆଣିବ ।" ଲାବଣ୍ୟ ତା ହୃଦରେ ଆଦୌ ସନ୍ତୁଷ୍ଟ ନ ଥିଲା ।

ସେ ମେନକାର ଫୋନ୍‌କୁ ଶୁଣିବ ଦେଇଦେଲା । ସେ ମେନକା ସହିତ କଥା ହୋଇ ପାରେ ମାତ୍ର ମେନକା ଲାବଣ୍ୟ ସହିତ ନୁହେଁ ।

ଲାବଣ୍ୟ ତାର ରହିବାର ଆବଶ୍ୟ ସୁବିଧା କରିଥିଲା । ରହିବା ପାଇଁ ଏକ ସୁନ୍ଦର ଘର, ଫ୍ରିଜ୍, ଗ୍ୟାସ୍, ଇତ୍ୟାଦି । ଏପରିକି ତାର ମନୋରଞ୍ଜନ ପାଇଁ ସେ ଗୋଟିଏ ଟି.ଭି. ସେଟ୍ ମଧ୍ୟ ରଖିଦେଲା ।

ଆଉ ଅଧିକ କ'ଣ ହୋଇପାରେ ? ପ୍ରଥମେ ଲାବଣ୍ୟ ଭାବିଥିଲା ଖର୍ଚ୍ଚ ବୋଧହୁଏ ତିରିଶ ହଜାର ଟଙ୍କାରୁ ଅଧିକ ହେବନି ମାତ୍ର ଖର୍ଚ୍ଚ କମେ ଲକ୍ଷେ ଟଙ୍କା ଧରିବା ଉପରେ । କିନ୍ତୁ ସେଥି ପ୍ରତି ସେ ଆଦୌ ଶଙ୍କିତ ନ ଥିଲା ।

"ଅଭ୍ୟାଚଠାରେ ଥିବା ବାଲମନ୍ଦିର ଅନାଥାଶ୍ରମଠାରେ ମୁଁ ଅବୈତନିକ ସମ୍ପାଦକ ଭାବରେ କାର୍ଯ୍ୟ କରୁଛି । ତେଣୁ ମୋତେ ସେଠାକୁ ବାରମ୍ବାର ଯିବାକୁ ହେଉଛି ।" ସେ ଅପୁ ଓ ଅନ୍ୟମାନଙ୍କୁ ତାର ବାରମ୍ବାର ବାହାରକୁ ଯାଉଥିବାର କୈଫିୟତ ଦେଇ କହିଥିଲା । ଯେତେବେଳେ ସେ ନିଜେ କାହିଁକି ଗାଡ଼ି ଚଲାଉଛି ବୋଲି ପଚାରିଲେ ; ସେ ସେମାନଙ୍କୁ କହେ, ଗାଡ଼ି ଚଲାଇବାଦ୍ୱାରା ତାର ଗୋଡ଼ର ମାଂସପେଶୀ ଶକ୍ତ ହେବ ଏବଂ ସ୍ୱାସ୍ଥ୍ୟ ଭଲ ରହିବ ।

ସେମାନେ ତା କଥାରେ ବିଶ୍ୱାସ କରିଥିଲେ ।

ସେ ପ୍ରତିଦିନ ଆଡ଼ୟାରକୁ ଯାଉଥିଲି ଏବଂ ମଧ୍ୟାହ୍ନ ପୂର୍ବରୁ ଫେରି ଆସୁଥିଲି, ଫଳରେ ସନ୍ଧ୍ୟାବେଳେ ସେ ସ୍ୱାମୀ ଓ ତାର ସାଥିମାନଙ୍କ ସହ କଟାଇ ପାରୁଥିଲି ।

ପ୍ରଥମ ତିନିମାସ ଥିଲି ଲବଣ୍ୟ ପାଇଁ ବାସ୍ତବିକ ଆନନ୍ଦର ସମୟ । ଆସ୍ତେ ଆସ୍ତେ ସେ ନିଜକୁ ଅସହାୟ ଅନୁଭବ କଲି କାରଣ ସେ ସ୍ୱାମୀ ସହିତ ମେନକା ଗର୍ଭରେ ବଢ଼ୁଥିବା ପିଲା ବିଷୟରେ ଆଲୋଚନା କରି ପାରୁ ନ ଥିଲି ବା ସେମାନଙ୍କର ପିତୃତ୍ୱ ଓ ମାତୃତ୍ୱ ସମ୍ପର୍କରେ ଭାବ ବିନିମୟ କରି ପାରୁ ନ ଥିଲି ।

ଏଣେ ମେନକା ଦିନକୁ ଦିନ ଅଧିକ ଅଧୈର୍ଯ୍ୟ ଓ ଅସହାୟ ଅନୁଭବ କରୁଥିଲି । ମାଡ୍ରାସ୍ ଟି.ଭି. ଦିନରାତି କାର୍ଯ୍ୟ କରୁନି ବୋଲି ତାର ଦୁଃଖ । ଆମେରିକା ଟି.ଭି. ଦିନରାତି ଚାଲିବା ପରି ଏଠି ଟି.ଭି. ଚାଲୁଥିଲେ ସେ ଦିନରାତି ହୁଏତ ଟି.ଭି. ଦେଖି ସମୟ କଟାଇ ପାରନ୍ତା ।

ରେଡ଼ିଓ ଶୁଣି ଶୁଣି ତାର ବିରକ୍ତି ଆସି ଯାଇଥିଲି ।

ଏପରିକି କୌଣସି ତାମିଲ ଓ ଇଂରାଜୀ ପତ୍ରିକା ନ ଥିଲି ଯାହାକୁ ସେ ନ ପଢ଼ୁଥିଲି । କେତେକ ଲେଖକଙ୍କର ଲେଖା ପ୍ରତି ଥିଲି ତାର ଦୁର୍ବଳତା । ଲାଇବ୍ରେରୀରୁ ବଛୁଯାଇ ବହି ଉପନ୍ୟାସ ଲବଣ୍ୟ ନେଇ ଆସିଥିଲି ତା ପାଇଁ । କେତେ ସମୟ .ସେ

ବା' ପଢ଼ି ପାରନ୍ତା ? ହାୟ ! କି ଦୁଃଖ ଓ ଯନ୍ତ୍ରଣା ! ଯାହା ସହିତ କଥା ହୋଇ ପାରିବନି, ଗୋଟିଏ ଘର ଛାଡ଼ି ଆଉ କୁଆଡ଼େ ବୁଲି ଯାଇ ପାରିବନି ! ମେନକା କନ୍‌ଭେଣ୍ଟ୍‌ର ଦଶମ ଶ୍ରେଣୀଯାଏ ପଢ଼ିଥିଲି ।

"ତୋର ସୁଗୋଲ ମୁଖମଣ୍ଡଳ, ସୁଠାମ ଶରୀର ଓ ମନଲୋଭା ସ୍ବୃହାଣୀ ସିନେମା ଅଭିନେତ୍ରୀ ହେବା ପାଇଁ ଉପଯୁକ୍ତ । ତା ଘର ପଡ଼ୋଶୀ ଦରଜିର ବାରମ୍ବାର କହିବା ଓ ପ୍ରଶଂସାଦ୍ବାରା ସେ ପ୍ରଭାବିତ ହୋଇ ସିନେମା ଅଭିନେତ୍ରୀ ହେବାର ସ୍ୱପ୍ନରେ ସେହି ଦରଜି ସହିତ ମାଡ୍ରାସ ଚାଲି ଆସିଥିଲି । ତାକୁ ଆଣି ସେ ଗୋଟିଏ ହୋଟେଲରେ ରଖିଥିଲି ଏବଂ ସେହି ରହିବା ସମୟ ମଧ୍ୟରେ ସତରବର୍ଷୀୟା ମେନକାର ଯୌବନକୁ ଦରଜିଟୋକା ଭଲଭଳି ଉପଭୋଗ କରି ଦିନେ ତାକୁ ଅସହାୟ ଅବସ୍ଥାରେ ଛାଡ଼ି କୁଆଡ଼େ ଚାଲି ଯାଇଥିଲି । ସେ ତାର ପିତାମାତାଙ୍କ ନିକଟକୁ ଫେରି ପାରିଲାନି, କାରଣ ତା ବାପା ଥିଲେ ସେହି ଅଞ୍ଚଳର ଏକ ସମ୍ଭ୍ରାନ୍ତ ବ୍ୟକ୍ତି । ସେ ଘରକୁ ଯାଇଥିଲେ ତାକୁ ନିଶ୍ଚିତରୂପେ ସେ ତା ମୁହଁକୁ ଚାହିଁ ନଥାନ୍ତେ, ହୁଏତ ନିଜେ ଆତ୍ମହତ୍ୟା କରିଥାନ୍ତେ ।

ତେଣୁ ତା ନିକଟରେ ଆଉ କୌଣସି ଉପାୟ ନ ଥିଲା, ସେ ସେହି ପତିତ ଜୀବନ ବିତାଇବାକୁ ଆରମ୍ଭ କଲା । କେବେ କେବେ ବେଶ୍ୟାବୃତ୍ତି କରି ଓ ଆଉ କେବେ ସିନେମାରେ ସାଇଡ୍ ରୋଲ୍‌ରେ ଛୋଟ ଛୋଟ ରୋଲ୍ କରି । ତେବେ ସେ ନିହାତି ତଳକୁ ଖସିଯାଇ ନିଜର ଶରୀରକୁ ଦଶ ବା କୋଡ଼ିଏ ଟଙ୍କା ପାଇଁ ଯାହାକୁ ପାରୁ ତାକୁ ବିକୁ ନ ଥିଲା ।

ମେନକା ଆଠଟି ସିନେମାରେ ଗ୍ରୁପ୍ ନାଚରେ ଭାଗ ନେଇଥିଲା । ମନୋହାରିଣୀ ରୂପ ଥାଇକୁ ଅପରୂପ ଯୌବନ ଥିଲେ ମଧ୍ୟ ମେନକା ସିନେମା ଜଗତରେ ବିଶେଷଭାବେ ଆଲୋଚିତ ହୋଇପାରି ନଥିଲା କାରଣ ଚଳଚ୍ଚିତ୍ରନିର୍ମାତାମାନଙ୍କର ଯୌନଲାଳସା ନିକଟରେ ସେ ନିଜକୁ ବଳି ଦେବାକୁ କୁଣ୍ଠାବୋଧ କରୁଥିଲା । ନିହାତି ମାମୁଲି ହିନ୍ଦିଅଗୁଡ଼ିକ ଛବିରେ ଗୁରୁତ୍ୱପୂର୍ଣ୍ଣ ରୋଲ୍ ପାଉଥିବାବେଳେ ସେ ସାଇଡ୍ ରୋଲ୍‌ରେ ଅଭିନୟ କରିବା ପାଇଁ କେବେ କେବେ ସୁଯୋଗ ପାଉଥିଲା । ସେଥିପାଇଁ ସେ କାହାକୁ ବା

ଦୋଷ ଦଅନ୍ତା । ନିଜକୁ ନିଜର ଏତାଦୃଶ ଭାଗ୍ୟ ପାଇଁ ଧନ୍ୟବାଦ ଦେଉଥିଲା । ସମାଜର ହବୁଠିତ ଏହି କଥା ଶୁଣିଥିଲା !

କିନ୍ତୁ ଅନ୍ତରର ନିଭୃତ କୋଣରେ ପୁରୁଷର ନୀଚ କାମ ବାସନାକୁ ସେ ଘୃଣା କରୁଥିଲା । ଭଲ ପାଇବା ଗୋଟିଏ କଥା, ପୁରୁଷର ଯୌନ ବାସନାର ଶିକାର ହେବା ଅନ୍ୟ ଗୋଟିଏ କଥା । ଧମୁ ସହିତ ତାର ଛବିରେ କାମ କରିବା ପରେ ଧମୁର ବ୍ୟକ୍ତିତ୍ୱ ପ୍ରତି ଆକୃଷ୍ଟ ହୋଇ ତାକୁ ଅଲୌକିକ ଆତ୍ମିକ ଶାନ୍ତି ମିଳିଥିଲା ।

ବିହ୍ମୃ ସମୟରେ ସେ ଧମୁପରି କୌଣସି ଏକ ଉତ୍ତମ ପ୍ରଭାବଯୁକ୍ତ ପୁରୁଷକୁ ବାହା ହୋଇ ବିବାହିତ ଜୀବନ ବିତାଇବାର ସ୍ୱପ୍ନ ଦେଖିଛି ।

ମାତ୍ର ତାହା କ'ଣ ଆଉ ସମ୍ଭବ ? ଓଃ, ନା । ନାରୀ ପୁରୁଷ ନିକଟରେ କେବଳ ଉପଭୋଗର ବସ୍ତୁ । କିଏ କାହିଁକି ବାରନାରୀର ସ୍ୱାମୀ ହେବାକୁ ଇଚ୍ଛା କରିବ ? ଘର ଛାଡ଼ି ଗୁଲି ଆସିବାଧିଁ ତାର ଭୂଲ୍ ହୋଇଗଲା । ଦଦମାନ୍ ଦରଜୀ ତା ସହ କେତେ ମାସ ରହିବା ପରେ, ତାକୁ ଛାଡ଼ି ଗୁଲିଯିବାବେଳେ କହିଲା, "ମୋ ମାଆ ଗୁହାଁନ୍ତି ମୁଁ ଏକ କୁଳୀନ ଝିଅ ବିବାହ କରେ । ମାଙ୍କର ହୃଦ୍‌ରୋଗ । ମୁଁ ଯଦି ତୁମ କଥା ତାଙ୍କୁ କହିବ ; ମୁଁ ଜାଣେନା ତାଙ୍କର କ'ଣ ହେବ । ମେନକା, ମୋତେ ଭୁଲିଯାଅ ।"

ମୁଁ ଭାଗ୍ୟହୀନା କିନ୍ତୁ ମୋର ଅଛି ରୂପ ଓ ଯୌବନ । ମେନକା ନିଜକୁ ଧୈର୍ଯ୍ୟ ଦିଏ । ମୋତେ ଅପେକ୍ଷା କରିବାକୁ ହେବ । ଦିନେ ନା ଦିନେ ଭାଗ୍ୟଦେବୀ ମୋ ପ୍ରତି ପ୍ରସନ୍ନ ହେବେ । ସେତେବେଳେ ଏହି ପୁରୁଷଗୁଡ଼ାକ ମୋ ଆଗରେ ଲମ୍ବହୋଇ ମୋର ଗୋଡ଼ଧୂଳି ନେଇ ମୁଣ୍ଡରେ ଲଗାଇବେ । ମୁଁ ତେବେ ଯାଇ ଶାନ୍ତିର ନିଃଶ୍ୱାସ ମାରିବ ! ସେଦିନ ଆସିବ, ଦିନେ ନା ଦିନେ ସେ ସମୟ ଆସିବ ।"

ଏଭଳି ଶହ ଶହ ସ୍ୱପ୍ନ । ନିଜ ବ୍ୟକ୍ତିତ୍ୱରେ ଦୃଢ଼ ବିଶ୍ୱାସ—ଏହିପରି ଏକ ମୁହୂର୍ତ୍ତରେ ତାର ସାକ୍ଷାତ ହୁଏ ଲାବଣ୍ୟ ସହିତ ।

ହଠାତ୍ ଲାବଣ୍ୟ ପହଞ୍ଚିବା, ତାର ଯୋଜନା ଏବଂ ସାହାଯ୍ୟ କରିବାର ପ୍ରତିଶ୍ରୁତିକୁ ସେ ସାବ୍ୟସ୍ତ ଭାବିଥିଲା । ସତରେ କଣ ଭାଗ୍ୟଦେବୀ ତା ପ୍ରତି ପ୍ରସନ୍ନ ହେଲେ !

ଧମୁ ଖୁବ୍ ଭଲ ଲୋକ । ସେ ଲବଣ୍ୟର ଶଲ୍ୟାଧାର୍‌କୁ ସମ୍ମାନ ଦଅନ୍ତି । ସେ ବି ଆସିଥିଲେ ଲବଣ୍ୟକୁ ନେଇ ତା ପାଖକୁ । ମାତ୍ର ଲବଣ୍ୟ ମେନକାର ସ୍ୱାସ୍ଥ୍ୟ କାହିଁକି ଲୋଡ଼ିଲା ? ସେ ସିନେମାରେ ଘଟିଥିବା ସବୁ ଦୃଶ୍ୟକୁ ପୁନର୍ବାର ମନେ ପକାଇବାକୁ ଚେଷ୍ଟାକଲା ।

କେଉଁ ଶତରେ କାହାର ସ୍ତ୍ରୀ, କାହାର ଭଉଣୀ, ପ୍ରେମିକା ବା ଶ୍ମଶାନଗାମୀ । ସେ କ'ଣ ଲବଣ୍ୟର ସ୍ୱପ୍ନକୁ ସାର୍ଥକ କରିବାର ନାୟିକା ! ଯାହାହେଉ, ତା'ର ଏ ବର୍ଷକର ଅଭିନୟର ମୂଲ୍ୟ ପଚିଶ ହଜାର ଟଙ୍କା । ଦୀର୍ଘ ତିନି ବର୍ଷ ଧରି ସେ ଫିଲ୍ମରେ ଅଭିନୟ କରିଛି ମାତ୍ର ପାଇଛି କ'ଣ ? କିଛି ନୁହେଁ ।

ସେ ଆଠ ଗୋଟି ଛବିରେ ଅଭିନୟ କରିଛି—ଦରଜି, ନାୟକ, ସ୍ନାନ ମୁକ୍ତ ସ୍ୱ— ସମସ୍ତେ ତା'ର ସ୍ୱାମୀ ନାଁ'କୁ ମାତ୍ର ହୋଇଛନ୍ତି । ମାତ୍ର ଶେଷଫଳ କ'ଣ ? ସେ ସତର୍କହୋଇଛି ଏବଂ ହେଇଥିପାଇଁ ତାକୁ ସମସ୍ତେ ଗର୍ବିଣୀ ବୋଲି ଭାବନ୍ତି କାରଣ ସେ ନିଜ ଯୌବନକୁ ଢଳ ଢଳ କରି ବାଣ୍ଟିଦେବାକୁ ବ୍ୟସ୍ତହୋଇନି ।

ସତ କହିଲେ ଲବଣ୍ୟର ଯୋଜନା ପ୍ରଥମେ ତାକୁ ବଡ଼ ଶଲ୍ୟାରେ ପକାଇଥିଲା । ସେ ଜଣେ ପର ପୁରୁଷର ସନ୍ତାନକୁ ଗର୍ଭରେ ଧାରଣ କରିବ । ତା'ର ଜନ୍ମପରେ, କିଛି ପାରିତୋଷିକ ନ କରି ସେହି ସନ୍ତାନକୁ ଅନ୍ୟକୁ ଦେଇ ଆସିବ । ନାରୀର ଜରାୟୁ କ'ଣ ଭଡ଼ା ।ପାଇଁ ?

ଏହା କ'ଣ ସମ୍ଭବ । ଜଣେ ସ୍ତ୍ରୀ ହୋଇ ସେ ଏହା କରିପାରେ ?

କାହିଁକି ନୁହେଁ ?

ଜନ୍ମ ଦିନରୁ ସେ ତା'ର ପିତାମାତା ଓ ଭଉଣୀ ସହିତ ରହୁଥିଲା ମାତ୍ର ଦୀର୍ଘ ତିନି ବର୍ଷ ହେଲା ସେ ଏକା ଏକା, ତା' ପାଖରେ ଆଉ କେହି ନାହାନ୍ତି । ଯଦି ଏହା ସମ୍ଭବ ହେଲା, ତେବେ ସେ ଜଣେ ଅଜଣା ଲୋକର ବୀର୍ଯ୍ୟ ଗ୍ରହଣ କରି ଗର୍ଭଧାରଣ କରି ପାରିବନି କାହିଁକି ?

ଯଦି ତା'ର ଗର୍ଭରୁ ସନ୍ତାନଟି ନଷ୍ଟ ହୋଇଯାଏ ?

ସେ ଜାଣେନା, ସେ ପୁରୁଷଟି କିଏ, ତାକୁ ସେ ବାହାହୋଇନି, ଭଲ ମଧ୍ୟ ପାଇନି ତାକୁ ।

କ'ଣ ହେଲା ସେଇଠୁ ?

ହତରେ ସେ କଏ ? ସୁନ୍ଦର ? କୁତ୍ସିତ ? ଖରାପ ? ରୋଗଗ୍ରସ୍ତ ? ସ୍ୱାସ୍ଥ୍ୟବାନ ?
•••ନା, ସେ କିଛୁ ଜାଣେନା । ପ୍ରଥମେ ଗୋଟେ ଇଞ୍ଜେକସନ । ତା'ପରେ ପର୍ଯ୍ୟ ଦଶ ମାସ ଧରି ସାଇତିଲା ବାହକରିବା ତା' ଭାଗ୍ୟରେ ଅଛି । ଗୋଟେ ବଡ଼ଟ ବାସଗୃହ, ସବୁ ପ୍ରକାର ବିଳାସ ସାମଗ୍ରୀ ଓ ତା'କଥା ଶୁଣିବାକୁ ଗୋଟେ ଗୃହିଣୀ—ସେ ଆଉ ଅଧିକ କ'ଣ ବା ଆବଶ୍ୟକ କରେ ? ସେ କ'ଣ ବା କରିଚି, ତା'ର ଜନ୍ମକୁ ତ ଯାହା ଭଡ଼ା ଦେଇଛି ! ଏ କାର୍ଯ୍ୟଯୋଗୁଁ ଯଦି ସେହି ସ୍ୱାମୀ ସ୍ତ୍ରୀ ସୁଖରେ ରହନ୍ତି !

ପ୍ରଥମ ଦୁଇମାସର ପର୍ଯ୍ୟବେକ୍ଷଣ ପୂରୁଖୁରୁରେ କଟିଗଲା । ସେ ଏକ ସମ୍ଭ୍ରାନ୍ତ ପରିବାରର ଲୋକପରି ଚଳିବାକୁ ଲାଗିଲା ! ମାତ୍ର ସେଦିନଠୁ ସେଇ ସକାଳୁଆ ଦୁର୍ବଳତା—ତା ପେଟରେ ଯନ୍ତ୍ରଣା ବଢ଼ିବାକୁ ଆରମ୍ଭ ହେବା, ମୁଣ୍ଡ ବୁଲାଇବା, ବାନ୍ତିକରିବାରୁ ସେ ଅନୁଭବ କଲା ମା' ହେବାର ଯନ୍ତ୍ରଣା । ପିଲାଟିକୁ ପେଟରେ ଧରି ତା'ର ମନହେଲା ଦୋହଦମାନ ।

ଲବଣ୍ୟ ତାକୁ ଯେପରି ବାନ୍ଧି ରଖିଥିଲା । ସ୍ୱାଧୀନ ଭାବେ ଚଳବୁଲ କରିବାକୁ ସେ ଥିଲା ଅକ୍ଷମ ! ଜେଲରେ ସେ ଯେପରି ବନ୍ଦିନୀ । ପଢ଼ିବା, ରେକର୍ଡ଼ ଶୁଣିବା ବା ଟି. ଭି. ଦେଖିବା—ଏହା ବ୍ୟତୀତ ଆଉ ଅଧିକ କ'ଣ ?

ଗୋଟେ ଫିଲ୍ମ ଦେଖିଗଲେ କ୍ଷତି କ'ଣ ?

ତାର ପୁରୁଣା ବନ୍ଧୁମାନଙ୍କୁ ଟିକିଏ ଦେଖାକରି ତାର ପୋଜିସନ୍ ଓ ଷ୍ଟାଟସ୍ ସମ୍ବନ୍ଧରେ କହିଲେ କେମିତି ହୁଅନ୍ତା ?

ମୁଁ ଲବଣ୍ୟ ନିକଟରେ ପ୍ରତିଜ୍ଞା କରିଛି ଏକଥା ଯେପରି କାହାକୁ ନ କହେ । କେହି ଯେମିତି ନ ଜାଣେ ମୁଁ କ'ଣ କରୁଛି ? ହଁ, ମୁଁ ରାଜି ହୋଇଛି । ମାତ୍ର ମୁଁ କାହିଁକି ଜଣେ ବନ୍ଦିନୀ ଭଳି ରହିବି ?

ମେନକା ନିଜକୁ ବୁଝାଇ ଦେଇ ପାରୁ ନ ଥିଲା । ଦିନେ ସାହସ ସଞ୍ଚୟ କରି ସେ ଏକଥା ଲବଣ୍ୟକୁ କହିଲା !

"ମେନକା, ତୁ ପିଲାଙ୍କ ପରି କଥା କହୁଛୁ । ତୁ ସାରା ହୋଇ ଆସିଛୁ, ମୁଁ ଯାହା କହିବ ମୋ କଥା ମାନିବୁ । ଯଦି ତୁ ବାହାରକୁ ଯାଉ, ହୁଏତ କେହି ଦେଖିବ ଏବଂ ତା ସହିତ କଥାବାର୍ତ୍ତା ଆରମ୍ଭ ହେବ । ନା ମେନକା, ମୁଁ ବାସ୍ତବିକ ଦୁଃଖିତ । ତୋର ଏଠାରୁ ଯାଇ ଡାକ୍ତରଙ୍କୁ ଦେଖା କରିବା ଏବଂ ସନ୍ଧ୍ୟାବେଳେ ସମୁଦ୍ରକୂଳରେ ବୁଲିବା ହିଁ ଯଥେଷ୍ଟ । ମୁଁ ଆଉ ତୋତେ ଅଧିକ ସ୍ୱାଧୀନତା ଦେଇ ପାରିବିନି । ତୋ ପାଖରେ ଟି.ଭି. ଅଛି ଏବଂ ଯଦି ଅଧିକା କିଛି ଚାହୁଁ, ତେବେ ସିନେମା ଦେଖିପାରୁ । ବହି ପଢ଼, ସିଲାଇ କର ଏବଂ ଗୋଟେ ସୁଇଟର୍ ବୁଣ । ମାତ୍ର ସେତିକି ହିଁ ଯଥେଷ୍ଟ । ଲାବଣ୍ୟ କଣ୍ଠରେ ଦୃଢ଼ତା ।

ମେନକା ହତବାକ୍, ଲାବଣ୍ୟର ସମ୍ଭ୍ରାନ୍ତବଂଶୀୟ ଗର୍ବଦେଖି ସେ ମନେ ମନେ ରାଗୁଥିଲା । ଧମୁ ବୁଢ଼ୀ ସ୍ୱୀକରାଣୀଟିକୁ ତା ବିଷୟରେ ସତର୍କ କରି ଦେଇଥାନ୍ତି । ତୋତେ ଏକ ଧମକିଅର୍ ଦାୟିତ୍ୱ ନେବାକୁ ହେବ ।

ଏ ଝିଅଟି ଟିକିଏ ସ୍ୱତନ୍ତ୍ର ଧରଣର । ସେ ତା'ର ପ୍ରେମିକ ସହିତ ଘରୁ ପଳାଇ ଆସିଛି । ତା' ବଡ଼ ଭଉଣୀ ତାକୁ ଆଜି ଆଣି ଲୁଚାଇ କରି ରଖିଛି କାରଣ ତା'ର ବାପା ମାଆ ଏ ପର୍ଯ୍ୟନ୍ତ ରାଗିଛନ୍ତି । ମେନକା ହୃଦରୋଗୀ । ତା' ସହିତ ଆଦୌ କଥା ହେବୁନି ଏବଂ ତା'ର ଯାବତୀୟ କାର୍ଯ୍ୟ ସୁରୁଖୁରୁରେ କରି ଦେଉଥିବୁ । ତୋତେ ଯେମିତି ନିର୍ଦ୍ଦେଶ ଦିଆଯିବ, ସେମିତି କରିବୁ । ବର୍ଷକ ଭିତରେ ତା'ର ରାଗ କମିଯିବ । ତୋର ଦରମା ମାସକୁ ଶହେ ଟଙ୍କା—ରହିବା ଖାଇବା ଛଡ଼ା । ବର୍ଷକ ପରେ ତୋତେ ହଜାର ଟଙ୍କା ଅଧିକ ପୁରସ୍କାର ଆକାରରେ ଦିଆଯିବ । ତେଣୁ ସାବଧାନ ।"

ସ୍ୱୀକରାଣୀଟି ତାକୁ ବିଶ୍ୱାସ କରିଥିଲା ।

ବୁଢ଼ୀଟି ଆଦୌ କଳହୁଡ଼ୀ ନ ଥିଲା । ସେ ମେନକାକୁ ମାତୃବତ୍ ସାନ୍ତ୍ୱନା ଦେଉଥିଲା, "ଭଗବାନଙ୍କ ଦୟାରୁ ସବୁ ଠିକ୍ ହୋଇଯିବ । ତୁ ତୋର ପ୍ରେମିକକୁ ପାଇପାରିବୁ । ମନ ଖ୍ରାପ କରନା ।" ଲାବଣ୍ୟ ମେନକା ପ୍ରତି ଏତେ କଠୋର ଥିବା ହେତୁ ସେ ଦାୟିତ୍ୱ ସମ୍ପନ୍ନ ଭାବେ ତା'ର ସୁରକ୍ଷା କରୁଥିଲା । ଦିନ ଗଡ଼ିଚାଲିବା ମାତ୍ରେ ମେନକା ଲାବଣ୍ୟ ବିଷୟରେ ବହୁତ କଥା ଜାଣିଲା ।

ଡାକ୍ତର ସୁଶୀଲାଙ୍କ କଥାରୁ ସେ ତା'ର ରକ୍ଷାକର୍ତ୍ତ୍ରୀର ଧନାଢ଼୍ୟ ତା'ଆଭିଜାତ୍ୟ, ସ୍ୱାମୀର ଚରିତ୍ରଣ ଓ ଅନ୍ୟାନ୍ୟ ଅନେକ ବିଷୟରେ ବିଶେଷ ଜ୍ଞାନ ସେ ଲାଭକଲା ।

"ସେମାନେ ସ୍ୱାମୀ ବିଷୟରେ ଖୁବ୍ ଭଲ ମତ ଦେଉଛନ୍ତି । ସେ ତେବେ ଦେଖିବାକୁ କପରି ହୋଇଥିବ ?"

ଯେତେବେ ସେ ନିଜକୁ ନିଜେ କହିଲା, "ଲାବଣ୍ୟ ମୁଁ ତୁମକୁ ଦୀର୍ଘ ସାତମାସ ଧରି ଜାଣେ ମାତ୍ର ମୋତେ ତୁମ ବିଷୟରେ କେହି କିଛି କହିନ । ତୁମର ସ୍ୱାମୀ ବା ତୁମର ପରିବାର···।'

ଲାଭ ତାକୁ ଏକଥା ଶେଷ କରିବାକୁ ଦେଇ ନ ଥିଲା ।

"ତୋର ଏ ବିଷୟରେ ମୁଣ୍ଡ ଖେଳାଇ ଲାଭ କ'ଣ ? ଯଦି କିଛି କହିବାର ଥାଏ, ତେବେ ତୋର ସ୍ୱାସ୍ଥ୍ୟ ବା ରହିବା ସମ୍ବନ୍ଧରେ କହିପାରୁ, ମୁଁ ତାହା ଯଥାଶୀଘ୍ର ପୂରଣ କରିବି । ସେଇଠି ବନ୍ଦକର । ମୂଳରୁ ତୋତେ କହି ରଖିଛି, ତୋର ପରିସର କେତେ ଏବଂ ସେଥିରେ ତୁ ରାଜି ହୋଇଛୁ । ଏକଥା ଯେପରି ଭୁଲି ନ ଯାଉ ଅଧିକା କିଛି ବ୍ୟକ୍ତିଗତ ପ୍ରଶ୍ନ ଯେପରି ମୋତେ ନ ପଚାରୁ ।"

ମେନକା ବିରକ୍ତ ହୋଇଗଲା । ସାଧାରଣତଃ, ସେ କାହାର ବ୍ୟକ୍ତିଗତ ବ୍ୟାପାରରେ ମୁଣ୍ଡ ଖେଳାଏନା । ମାତ୍ର ଲାବଣ୍ୟ, ଯାହା ସହିତ ସେ ଏତେ ମାତାରେ ଘନିଷ୍ଠ; ତା'ଠୁ ପ୍ରେମ, ଭଲପାଇବା ଓ ସାନ୍ତ୍ୱନାର ଏକ ଶୁଦ୍ଧାମଣି ସେ ଆଶା କରୁଥିଲା ।

ଆଉ ଦିନେ ମେନକା ହଠାତ୍ ଅସୁସ୍ଥ ଅନୁଭବ କଲା । ସେ ଲାବଣ୍ୟକୁ କେଉଁ ବଟିକା ଖାଇବାକୁ ହେବ ଜାଣିବା ପାଇଁ ଟେଲିଫୋନ୍ କଲା ।

ସମୟ ସକାଳ ସାତଟା ।

ଅପର ପାର୍ଶ୍ୱରୁ ଏକ ପୁରୁଷର କଣ୍ଠସ୍ୱର ।

"ହ୍ୟାଲୋ ।"

'ହ୍ୟାଲୋ"—ସେ କହିଲା ।

"ମୁଁ ସ୍ୱାମୀ କହୁଛି ।"

ସ୍ରମ ! ତା ଗର୍ଭସ୍ଥ ସନ୍ତାନର ଜନକ ! ସେ ଉତ୍ତେଜିତ ହୋଇ ଉଠିଥିଲା ।

ପର ମୂହୂର୍ତ୍ତରେ ଲବଣ୍ୟର କଣ୍ଠସ୍ୱର ।

"କିଏ କହୁଛ ?"

"ମୁଁ ମେନକା ।"

"ରଙ୍ଗ୍ ନମ୍ବର ।" ଟେଲିଫୋନ୍‌ଟା ହଠାତ୍ ବିଚ୍ଛିନ୍ନ ହୋଇଗଲା ।

ଦଶମିନଟ୍ ପରେ ଲବଣ୍ୟ ତାକୁ ଟେଲିଫୋନ୍ କଲା । "ମୁଁ ତୋତେ କହିଛି ସରକୁ ଟେଲିଫୋନ୍ କରିବୁନି । ତୋର ଏତେ ସାହସ କେମିତି ହେଲା ? ମୋତେ ଏସବୁ ଭଲ ଲାଗୁନି । ଏତେ ଜରୁରୀ କ'ଣ ?" ସେ ବିରକ୍ତ ହୋଇ ତାକୁ ଗାଳି ଦେଲା ।

ସେହି ମୁହୂର୍ତ୍ତରେ ମେନକାର ରାଗ ସେପରି ସୀମା ଟପିଗଲା । କାହିଁକି ଜଣେ କ୍ରୀତ-ଦାସୀ ଭଳି ମୁଁ ତାକୁ ଧରୁବେଳେ ମାନିବ ? ତାର ଏତେ ସାହସ କେମିତି ହେଲା ମୋତେ ଅପମାନ ଦେବାକୁ । ଯଦିଓ ସେ ଲବଣ୍ୟ ସହିତ କୌଣସି ଯୁକ୍ତି କଲାନି, ମାତ୍ର ରାଗରେ ଜର୍ଜ୍ଜରିତ ହୋଇ ଫୁଁ ଫୁଁ ହେବାକୁ ଲଗିଲା । ଯେତେ ଅବା ନାଗ-ସାପଟି ତତ୍‌କ୍ଷଣାତ୍ ମାଡ଼ ଖାଇଛି !

ତାର ରାଗିବାର କ'ଣ ବା କାରଣ ଅଛି ? ମୁଁ ତାର କି ଦୋଷ କରିଛି ଯେ ! ତା ପାଇଁ କେବଳ ମୋତେ କେତେ ବେଶୀ ସ୍ୱାର୍ଥ ତ୍ୟାଗ କରିବାକୁ ହୋଇନି । ଏକଥା ସେ ଭୁଲିଯାଇ ମୋତେ ଚାକରାଣୀ ଭଳି ବ୍ୟବହାର କରିବ !

ତାହାହେଲେ ମୋର ମଧ୍ୟ ତାଠାରେ କିଛି କାର୍ଯ୍ୟ ନାହିଁ, ମୋର ଟଙ୍କା ଲୋଡ଼ା ନାହିଁ ।......

ମୁଁ କ'ଣ ହତରେ ଯାଇ ପାରିବ ?

ଦୁଇମାସର ଶିଶୁଟିକୁ ନଷ୍ଟ କରିବାର କୌଣସି ଉପାୟ ନାହିଁ ? ତା ନିକଟରେ ବୃଥାରେ କାହିଁକି କ୍ରୀତଦାସୀ ହୋଇ ରହିବ ? କିନ୍ତୁ ମୁଁ କେମିତି ଯିବ ? ମୁଁ ଯେ ଏଗ୍ରିମେଣ୍ଟ୍‌ରେ ସ୍ୱାକ୍ଷର କରିଛି । ଯଦି ଚୁକ୍ତିକୁ ଛିଡ଼ିଯାଏ, ମୋତେ ଲବଣ୍ୟକୁ ପଚିଶ ହଜାର ଟଙ୍କା ଦେବାକୁ ହେବ । ମୁଁ ବା ଏତେ ଟଙ୍କା କେଉଁଠୁ ପାଇବି, ତାକୁ ଦେବି ?

"ଯଦି ତୁମେ ସର୍ତ୍ତରେ ଖିଲାପ କର, ମୁଁ ତୁମ ଉପରେ ଖେସାରତ ଲଗିବ"—ଧମୁ ମଧ୍ୟ କହିଥିଲ ।

"ତାଙ୍କୁ ଛାଡ଼ି ମୁଁ କେମିତି ସିନେମା ଜଗତରେ ଉନ୍ନତି କରିବ ।"
ବହୁତ ଭାବଚିନ୍ତି ଚୁକ୍ତି ଖିଲାପ ନ କରିବାକୁ ମେନକା ସ୍ଥିର କଲା ।

ତା ରାଗ କମିଗଲା, ମେନକା ଭାବିଲା ଏଭଳି ଆରାମଦାୟକ ଜୀବନ ଛାଡ଼ି ପଳାଇଯିବା ପାଗଳାମି ଛଡ଼ା ଅନ୍ୟ କିଛି ନୁହେଁ ।

ନିଜର ସ୍ଥିତି ସମ୍ପର୍କରେ ସଚେତନ ହୋଇ ଧୀର ମନରେ ସେ ଚିନ୍ତା କଲା ।
ଲାବଣ୍ୟ ଉପରୁ ଚିନ୍ତା ଯାଇ ଅଟକିଲା ରାମ ନିକଟରେ ।

ରାମକୁ ଦେଖିବାକୁ, ରାମ ସହିତ କଥା ହେବାକୁ, ଲାବଣ୍ୟ ଏତେ ସତର୍କ ' ମାନ୍ଦ, କାହିଁକି ?

ରାମକୁ ପାଇଥିବାର ସୌଭାଗ୍ୟ ହେତୁ ।
ସତରେ ତାଙ୍କ ସ୍ୱରରେ କେତେ ଗମ୍ଭୀରତା ?
କେମିତିକା ପୁରୁଷ ସେ ?
ସେ କ'ଣ ସତେ ସ୍ୱତନ୍ତ୍ର—କିମ୍ବା ସାଧାରଣ !
ସେ କେମିତି ହୋଇଥିବେ ?
ରାମକୁ ଦେଖିଲେ କେମିତି ହୁଅନ୍ତା ?
ତା ସହିତ କଥା ହେଲେ କ୍ଷତି କ'ଣ ?

ଯଦି ମୋର ସ୍ୱାମୀଙ୍କ କହିବା ଦ୍ୱାରା ଲାବଣ୍ୟ ଏତେ ଉତ୍ତେଜିତ, ତାଙ୍କୁ ଦେଖିଲେ, ତାଙ୍କ ସହିତ କଥା ହେଲେ ସେ କେତେ ଉତ୍ତେଜିତ ନ ହେବ । ମୁଁ ତା କଥାରେ ଭୁଲି ଯାଇଛି, ତା ନିକଟରେ ଶ୍ରେଷ୍ଠ ହୋଇ ଯାଇଛି ।

ଲାବଣ୍ୟର ମୁହଁରେ ଏଭଳି ପ୍ରତିକ୍ରିୟାକୁ ଅନୁମାନ କରି ସେ ଯେପରି ଏକ ନିଷ୍ଠୁର ଆନନ୍ଦ ଅନୁଭବ କରୁଥିଲା ; ଏବଂ ମଧ୍ୟାହ୍ନ ପରେ ଯେତେବେଳେ ଗୃହକର୍ତ୍ତ୍ରୀଟି ବାହାରକୁ ଯାଇଥିଲା ; ସେ ଗୋଟିଏ ଗୃହ ବଜାଡ଼ିଲାବାଲାକୁ ଡାକି ପଠାଇଲା,

"ମୁଁ ଟେଲିଫୋନ୍‌ର ରୁଦ୍ରକୁ ହୁକେଇ ଦେଇଛୁ । ମୋତେ ଗୋଟେ ଅଲଗା ଷ୍ଟ୍ରବି-କାଠି ଉଧାର କରି ଦେବ କି ?" ଏବଂ ତା'ଠାରୁ ଏକ ଷ୍ଟ୍ରକାଠି ଉଧାର କରିଇ ନେଇ ସେ ତାକୁ ଲୁଚାଇ ରଖିଲା । ତା ଧମନୀରେ ସେ ଏକ ଅବ୍ୟକ୍ତ ଶିହରଣ ଅନୁଭବ କରୁଥିଲା ।

× × ×

"କୈଳାଶ ଇଣ୍ଡର ନେସ୍‌ନାଲ୍"...ସେକ୍ରେଟାରୀ ନରମ ଗଳାରେ କହିଲା, ଯେତେବେଳେ ମେନକା ଟେଲିଫୋନ୍ କଲା ।

ମେନକା ଦେହରୁ ଝାଳ ବାହାରୁଥିଲା । ତା'ର ସ୍ୱର ଥରୁଥିଲା ।

"ହ୍ୟାଲୋ ।"

"ମୁଁ ଜାଣିପାରେକି କିଏ କହୁଛନ୍ତି ?"

ମେନକା ହଠାତ୍ କୌଣସି ଉତ୍ତର ଦେଇ ପାରି ନ ଥିଲା । ସେ ଦୀର୍ଘ ପନ୍ଦରଦିନ ଧରି ରାମ ସହିତ କଥା ହେବାପାଇଁ ବ୍ୟାକୁଳ ହୋଇପଡ଼ୁଥିଲା; ଏବଂ ବହୁ କଷ୍ଟରେ ତା ଟେଲିଫୋନ୍ ନମ୍ବର ଖୋଜି ପାଇଥିଲା । ସେ ଲବଣ୍ୟଠାରୁ ଶୁଣିଥିଲା ଯେ ଟି. ଭି. କମ୍ପାନୀକୁ ପଠାଯାଇଥିବା ଚେକ୍‌ର ରସିଦ୍ ଆସିବ । ରସିଦ୍ ଆସିବା ଦିନ ସେ ଚତୁରତା ସହ କୈଳାଶମ୍ ଇଣ୍ଡର ନ୍ୟାସନ୍ୟାଲ ଟି. ଭି. କିଣିଥିବା କଥା ଟିପି ରଖିଥିଲା ।

ଟେଲିଫୋନ୍ ଡାଇରେକ୍ଟୋରୀ ଦ୍ୱାରା ଖୋଲାଇ, ସେ ରାମର ବ୍ୟକ୍ତିଗତ ନମ୍ବର ଟିପି ରଖିଲା । ଦିନେ ଲବଣ୍ୟ ଗୃହ ଛାଡ଼ିବା ପରେ, ସନ୍ଧ୍ୟାରେ ସେ ରାମକୁ ଟେଲିଫୋନ୍ କରିଥିଲା । ମନରେ ଥିଲା ବୋଝେ ଦୁର୍ଭାବନା ।

କେତେ ଉଦ୍‌ବେଗିଆ କାର୍ଯ୍ୟ ଏହା ?

ରାମ କ'ଣ ସହରରେ ଅଛି ?

ସେ କ'ଣ ମୋ ସହିତ କଥା ହେବ ?

କ'ଣ କହିବ ମୋ ନାଁ ପଚାରିଲେ ?

ସେ କ'ଣ ଲବଣ୍ୟକୁ ଏହି ଫୋନ୍ ବିଷୟରେ କହିବ ?

ଯଦି ଲବଣ୍ୟ ଜାଣେ, କ'ଣ ଉତ୍ତର ଦେବାକୁ ପଡ଼ିବ ?

ଧମୁ କ'ଣ ଭାବିବ ଯେ ? ସେ କ'ଣ ଦୁଃଖିତ ହେବ ଯେ ନର୍ଦମାରୁ ଉଠାଇ ସମାଜରେ ଯାହାକୁ ପ୍ରତିଷ୍ଠିତ କଲି ତାର ଏପରି ବ୍ୟବହାର ? ଆଃ, ଯେଉଁ ପ୍ରତିଷ୍ଠା !

ଓଃ ! ସେ ଯାହାଇଚ୍ଛା ତାହା ଭାବୁ ମୁଁ ରାମ ସହିତ କଥା ହେବି । କେତେଟା ଦିନ ଅଛି କମ୍‌ରେ । ତା'ପରେ ଚେଷ୍ଟାକରିବି ତାକୁ ଦେଖିବାକୁ । ମୁଁ କ'ଣ ମୋ ପେଟରେ ତା' ସନ୍ତାନକୁ ଧାରଣ କରିନି ! ତେବେ ତା' ସହିତ କଥା ହେବାକୁ, ତାକୁ ଦେଖିବାକୁ, ମୋର କାହିଁକି ଅଧିକାର ନାହିଁ ?

ମୁଁ ଅନ୍ୟ କାହାରିକୁ ଖାତିର କରେନା ।

ଦୁଇଥର ସେ ଟେଲିଫୋନ୍‌କୁ ଘୁରାଇଲା ।

କିନ୍ତୁ ଦୁଇଥରଯାକ ରିସିଭର୍‌ଟାକୁ ରଖିଦେଲା ଟେଲିଫୋନ୍ ଉପରେ, ଅପରେଟର୍ 'ହ୍ୟାଲୋ' କହିବା ମାତ୍ରେ ।

ତୃତୀୟ ଥରକୁ ତା'ଠି ଯେମିତି ସାହାସ ସଞ୍ଚୟ ହୋଇଗଲା ।

"ଦୟାକରି ମୁଁ ଜାଣିପାରେ କି କିଏ କହୁଛନ୍ତି ?"

ସେହି ପୁରୁଣା ପ୍ରଶ୍ନ ।

"ହେ ମୋର ପୁରୁଣା ବନ୍ଧୁ । ମୁଁ କେବଳ ତାଙ୍କ ସହ କଥା ହେବି ।"

ଟିକିଏ ନୀରବତା । "ଗୋଟେ ମିନିଟ୍" ଅପର ପକ୍ଷରୁ ଆବାଜ ଆସିଲା ।

"କଥା କୁହ", ସେ ଅପରେଟରର ସ୍ୱର ଶୁଣିଲା ।

"ହଁ, ରାମ କହୁଛି ।"

ମେନକା ଖୁସିରେ ଫାଟି ପଡ଼ିଲା । ଯେମିତି ସେ ଅମୂଲ୍ୟ ଧନ ପାଇଛି । ନାଚି ଉଠିଲା ତାର ସମସ୍ତ ଶିରାପ୍ରଶିରା । ସେ ଏଥର ନିଶ୍ଚେ କଥା ହେବ ।

"ମୁଁ ମେନକା କହୁଛି ।"

"କେଉଁ ମେନକା ?"

ତେବେ ରାମକୁ ମୋ ବିଷୟରେ କିଛି କୁହାଯାଇନି । ହଠାତ୍ ମେନକା ହୋଇଗଲା ହତୋତ୍ସାହ । ମାତ୍ର ଦୃଢ଼ତାର ସହ କହିଲା, "ଆମ ଦୁହିଁଙ୍କର କେବେ ସାକ୍ଷାତ ହୋଇନି ମାତ୍ର ଦୁହିଁଙ୍କର ସମ୍ପର୍କରେ କେତେ ନିବିଡ଼ତା ରହିଛି !"

"ହ୍ୟାଲୋ ! କଏ କହୁଛ ? ମୁଁ କିଛୁ ବୁଝି ପାରୁନି……"

"ତୁମେ ସେହି ସ୍ମରଣୀୟ ଦିନଟିକୁ ମନେ ରଖିଛ କି ? ୬-୬-୧୯୭୮ ?"

"କ'ଣ କହିଲ ?"

"ମୁଁ ଦୀର୍ଘ ଛଅମାସ ଧରି ଗର୍ଭବତୀ । ତୁମର ଏହା ସହିତ କିଛି ସମ୍ପର୍କ ଅଛି ବୋଲି ଭାବୁଛ କି ?"

"…………….."

ମେନକା ନିଶ୍ଚିତ ଥିଲି ଯେ ରାମ ସେ ଦିନଟିକୁ ମନେ ରଖିଛି ।

ସେ କହି ଚାଲିଲା, "ମୁଁ ଜାଣେନି ମିଷ୍ଟର ରାମ । କାହିଁକି ତୁମେ ବାରମ୍ବାର ମୋ ମନକୁ ଆସୁଛ । ମୁଁ ତୁମର ସ୍ୱର ଶୁଣିବାକୁ ବ୍ୟସ୍ତ ହୋଇ ପଡ଼ିଲି । ତେଣୁ ଏଇ ଟେଲିଫୋନ୍ । ଯଦି ମୁଁ ତୁମକୁ ଡିସ୍ଟର୍ବ୍ କରିଥାଏ, ତେବେ ମୋତେ କ୍ଷମା କରିବ ।"

"…………….."

"ମୁଁ ଯଦି ତୁମ ସହିତ କଥା ହୋଇ, ନିଜକୁ ଖୁସି କରି ନ ଥାନ୍ତି, ମୋର ଗର୍ଭରେ ବଢ଼ୁଥିବା ଶିଶୁଟି ଉପରେ ତାର ପ୍ରଭାବ ପଡ଼ିଥାନ୍ତା ବୋଲି ବଡ଼ମାନେ କହନ୍ତି । ମୁଁ ତୁମ ସ୍ତ୍ରୀକୁ ହଇରାଣରେ ପକାଇବା ପାଇଁ ତୁମକୁ ଘରକୁ ଟେଲିଫୋନ୍ କରିବାକୁ ଇଚ୍ଛା କଲିନି । ତୁମେ ମୋ କଥା ବୁଝି ପାରୁଛ ତ ?"

ତାର ମିଠା ମିଠା କଥା ଓ ମନଛୁଆଁ ଆବେଦନ ରାମର ମନକୁ ଛୁଇଁଲା ।

ରାମ କିଛି ଥିଲା ନୀରବ ।

"କଥା କହିବନି ? ମୁଁ ତୁମ ସ୍ୱର ଶୁଣିବା ଖୁସିରୁ ଟିକିଏ ପାଇବାରୁ କ'ଣ ବଞ୍ଚିତ ହେବି ?"

"ଓଃ, ତାହା ନୁହେଁ । ଏହା ମୋ ପାଇଁ ଏକ ଆଶ୍ଚର୍ଯ୍ୟ । ମୁଁ ତୁମର ସ୍ୱର ଶୁଣି ସେପରି ହତଭମ୍ବ ହୋଇ ପଡ଼ିଥିଲି !"

ମେନକା ହସିଲା ଅଳ୍ପ ଅଳ୍ପ ।

"ମୁଁ ରସିଭର୍ ରଖି ଦେଉଛି । ଅଧିକା ଡିସ୍‌ଟରବ୍ କରିବା ମୋର ଆଦୌ ଉଦ୍ଦେଶ୍ୟ ନୁହେଁ । ମୁଁ ତୁମକୁ ଗୋଟିଏ ସାହାଯ୍ୟ ମାଗି ପାରେ କି ? ମୋ ପାଇଁ ନୁହେଁ । ତୁମ ପିଲା ପାଇଁ । ମୁଁ ତୁମକୁ କେତେବେଳେ କେମିତି ଟେଲିଫୋନ୍ କରି ଦୁଇ ତିନି ମିନିଟ୍ କଥାବାର୍ତ୍ତା ହୋଇ ପାରିବ କି ? ପ୍ଲିଜ...ମୋର ଏହି ଇଚ୍ଛାକୁ ରଖିବନି ?"

"ନା, ନା, ଶଙ୍କା କରିବନି ; ମୋତେ ଡିସ୍‌ଟରବ୍ କରନା ଦୟାକରି ।"

ସମ କହିବାକୁ ଇଚ୍ଛା କରୁଥିଲା ମା'ଡ ସେ ଥିଲା ନିରୂପାୟ, ତା ପାଟିରୁ ବାହାରିଗଲା "ଅଚ୍ଛା ହେଉ ।"

"ହଁ, ଆଉ ଗୋଟିଏ କଥା । ଯଦି ମା'ର କିଛି ଅଭାବ ହୁଏ, ତେବେ ପିଲାଟିର ବଢ଼ିବାରେ ଅସୁବିଧା ହେବ—ଏକଥା ବଡ଼ବଡ଼ମାନେ କହୁଥାନ୍ତି । ତେଣୁ ମୁଁ ହାଇହର ସହିତ ତୁମ ପାଖକୁ ଟେଲିଫୋନ୍ କଲି । ଦୟାକରି ଏକଥା କାହାକୁ କହି ଉତ୍ତେଜିତ କରିବନି । ମୁଁ ଆଜି ଭାରି ଆନନ୍ଦ ଅନୁଭବ କରୁଛି । ଧନ୍ୟବାଦ ମିଷ୍ଟର ସମ, ବହୁତ ବହୁତ ଧନ୍ୟବାଦ ।"

ଘନବାଦଲ ଭିତରେ ବୁଲିବାବେଳେ ସମ ଯେପରି ତା'ର ସ୍ୱର ଶୁଣିବାକୁ ପାଇଥିଲା । ଏହା ଯେପରି ଥିଲା ସ୍ୱପ୍ନ । ଅତି ସୁନ୍ଦର କଳ୍ପନା, ମନୋରମ ଚଳିତ୍ରା ବା ଖିଅଲ୍ । ସୁନ୍ଦର ସ୍ୱର । ଭାରି ମିଠା ସ୍ୱର । ନିଶ୍ଚିତ ଭାବରେ ଯୁବତୀ । କୋଡ଼ିଏ ବା ବାଇଶି । ସେ ପିଲାଟି ପାଇଁ କେତେ ଉତ୍କଣ୍ଠା ତା'ର । ମନ୍ଦ ନୁହେଁ । ଲାବଣ୍ୟର ସହିତକୁ ତାରିଫ୍ କରିବା ଉଚିତ ।

ବୋଧହୁଏ ବହୁତ ପଢ଼ିଛି । ସୁନ୍ଦର ଇଂରାଜୀ କହି ପାରୁଛି—ସମ ଭାବି ଗୁଲିଥାଏ । "ସେ ମୋତେ ଅଫିସ୍‌କୁ କାହିଁକି ଟେଲିଫୋନ୍ କଲା ଘରକୁ ନ କରି ? ମୋର ନମ୍ବର ପାଇଲା କେମିତି ? କେହି ଜାଣିବା ଦରକାର ନାହିଁ, ସେ କହିଲା । ସେ କ'ଣ ବୋଲି ଲାବଣ୍ୟକୁ ଭାବଛି ? ଲାବଣ୍ୟକୁ ନ କହିବାକୁ ? ସେ ଏହାକୁ କିପରି ଗ୍ରହଣ କରିବ ?

ତାର ନାଁ କ'ଣ ?

ମେନକା ?

ମୁଁ କ'ଣ ଏକଥା ଲବଣ୍ୟକୁ କହିବ ?

ନା, ନୀରବ ରହିବ ?

ଚୁପ୍‌ଚାପ୍ ରହିଲେ ଭଲ୍ କ'ଣ । ବୃଥା ଲୋକକୁ କହି ଲାଭ କ'ଣ ? ତାକୁ ଡିଷ୍ଟରବ୍ କରିବା କ'ଣ ଦରକାର ?

ବହୁ ସମୟ ନିଜେ ନିଜେ ଆଲୋଚନା କରି, ସେ ଏକଥା ଲବଣ୍ୟାକୁ ନ କହିବାକୁ ସ୍ଥିର କଲା ।

ଚତୁର୍ଥ ଦିନ । ଠିକ୍ ଅପରାହ୍ଣ ୩.୩୦ ମିନିଟ୍ । ମେନକାର୍ ଟେଲିଫୋନ୍ ।

"ହ୍ୟାଲୋ ।"

"ମୁଁ ମେନକା । ତୁମେ ଶୁଣି ପାରୁଛ ?"

ଏପଟେ—ନୀରବତା ।

"କ୍ୟାନ୍ତୁ ?···ମୁଁ ଦୁଃଖିତ । ମୁଁ ତୁମକୁ ଗୋଟେ ଗୁରୁତ୍ୱପୂର୍ଣ୍ଣ କଥା କହିବାକୁ ଚାହେଁ ।"

"କଥା କ'ଣ ?" ରାମ ରାଗିବା ସ୍ୱରରେ କହିଲା ।

ତାକୁ ଲାଗୁଥିଲା ଯେପରି ଲବଣ୍ୟାର ଅଜାଣତରେ ମେନକା ସହିତ କଥା ହେବା ତାର ଆଦୌ ଉଚିତ ନୁହେଁ ।

ଯଦି ତୁମକୁ ମୋ କଥା ଭଲ ଲାଗୁନି ତେବେ ମୁଁ ଫୋନ୍ ରଖି ଦେଉଛି । ମାତ୍ର ଖୁସି ଖବରଟା ମୁଁ ତୁମକୁ ପ୍ରଥମେ ଜଣାଇ ମୋ ଆନନ୍ଦରେ ଭାଗୀଦାର କରିବାକୁ ଚାହେଁ । ···ମୁଁ ଦୁଃଖିତ ।"

ରାମର ତା ପ୍ରତି ସହାନୁଭୂତି ଜାଗ୍ରତ ହେଲା । ସେ କଥା କହିବାକୁ ଚାହୁଁଥିଲା ମାତ୍ର ନୀରବ ରହିଲା ।

"ତୁମେ ଶୁଣିବ ନା ନାହିଁ ?'

"............ ..."

"ଆଜି ସକାଳୁ ହଠାତ୍ ମୋ ପେଟରେ ପିଲାଟି ବୁଲୁଥିବାର ଅନୁଭବ କଲି । ମୁଁ ହଠରେ କେତେ ଆନନ୍ଦିତ । ମୋ ଭିତରେ ଆଉ ଗୋଟିଏ ଜୀବନ । ଆନନ୍ଦରେ ଅଧିର ହୋଇ କାନ୍ଦି ପକାଇଲି । ତୁମ ସହିତ ମିଶି ଏ ଆନନ୍ଦଟା ଉପଭୋଗ କରିବାକୁ ଇଚ୍ଛା କରି ଫୋନ୍ କଲି । ଫୋନ୍ କରି ତୁମର କ'ଣ କିଛି କ୍ଷତି କରିଛି ?"

ତାର କଥାଗୁଡ଼ାକ ରାମର ଶିରାପ୍ରଶିରାକୁ ଭେଦ କରୁଥିଲା ।

—ନା ; ମୁଁ ତାର ଫୋନ୍ କରିବାକୁ ବନ୍ଦ କରିବି—ସେ କିଏ ? ମୁଁ କାହିଁକି ତା ସହ କଥା ହେବି···ନା···ନା··· ।

"—ତୁମର ମୋତେ ବାରମ୍ବାର ଫୋନ୍ କରିବା ନିହାତି ଭୁଲ୍ ମିସ୍ ମେନକା । ମୁଁ ଭାବୁଛି ତୁମେ ଏହା ବୁଝିବ ।"

ରାମର ସ୍ୱରରେ ଦୃଢ଼ତା ନ ଥିଲା । ଥିଲା କେବଳ କାରୁଣ୍ୟ ।

"କୌଣସି କାରଣ ନ ଥାଇ ମୋର କାନ୍ଦିବାକୁ ଇଚ୍ଛା ହେଉଥିଲା । ମୁଁ ସେପରି ଅନାଥ, ନିଃସହାୟ । ତୁମର ଗାଳିକୁ ମୁଁ ମନରେ ଆଦୌ ନେଉନା କରୁନି । ତୁମ ମନରେ ଦୁଃଖ ଦେଇଥିବାରୁ ମୁଁ ଦୁଃଖିତ । ମୋ ଉପରେ ରାଗୁଛ କି ମିଷ୍ଟର୍ ରାମ ?" ଛୋଟ ପିଲାଙ୍କ ପରି ଅଳି ଓ ଯୁକ୍ତିର ସମାପ୍ତି ନ ଥିଲା ।
ରାମ ତାକୁ ବନ୍ଦ କରି ପାରୁ ନ ଥିଲା ।

"ତୁମେ କାହିଁକି ଭାବୁଛ ତୁମେ ଅନାଥ ? ଲାବଣ୍ୟ କ'ଣ ତୁମର ଦେଖାଶୁଣା ଭଲ ଭାବରେ କରି ପାରୁନି ? ତାହାହେଲେ ଏତେ ମନ ଦୁଃଖ କାହିଁକି ?"

"ଲାବଣ୍ୟ ସବୁ କଥାରେ ସାବଧାନ । କିନ୍ତୁ ମିଷ୍ଟର ରାମ, କହିଲ ଦେଖି, ତୁମେ କ'ଣ କେବେ ଜନଗହଳିଠାରୁ ଦୂରରେ ରହିଛ ; କେବଳ ସାଙ୍ଗରେ ଗୋଟିଏ ବୁଢ଼ୀ ଚାକରାଣୀ । ବାହାରକୁ ଯିବାକୁ ମନା । ତୁମେ ଏକା ରହିବାର ଯନ୍ତ୍ରଣା ଜାଣିବ କେଉଁଠୁ ? ଗୋଟିଏ ଶୂନ୍ୟ ହୃଦୟ ଓ ନଗ୍ନ ଦମ୍ପତିଙ୍କୁ ଆଶ୍ରୟ ଦେବାପାଇଁ ମୋତେ ନୀରବତାର, ଏକାକୀତ୍ୱର ବନ୍ଦୀଶାଳାକୁ ଫିଙ୍ଗି ଦିଆଯାଇଛି ! ତୁମେ କ'ଣ ମୋର ଦୁରବସ୍ଥା ହୃଦୟଙ୍ଗମ କରିପାରୁଛ, ମିଷ୍ଟର ରାମ ?"

ମେନକା ଜୋରରେ କାନ୍ଦିବାକୁ ଆରମ୍ଭ କରି ଦେଇଥିଲା ।
ରାମର ମନକୁ ଛୁଇଁଥିଲା ତାର କଥାଗୁଡ଼ିକ ।
ସତରେ ଖୁବ୍ ଦୁଃଖର କଥା······ଅତି ମର୍ମନ୍ତୁଦ କଥା ।

"ମେନକା ତୁମେ କାନ୍ଦନି······କାନ୍ଦନି ଦୟାକରି । ମୁଁ ସତ୍ୟ ଦୁଃଖିତ । ତୁମକୁ ଏହରୁ ଧକ୍କରି ମୁଁ ଅନୁତପ୍ତ । ଯେତେବେଳେ ତୁମର ଇଚ୍ଛା ମୋ ସଙ୍ଗେ ତୁମେ କଥାବାର୍ତ୍ତା କରିପାର । ଦୟାକରି ଏବେ କାନ୍ଦନି ।"

ନାକ ସୁଁ ସୁଁ ବନ୍ଦ ହୋଇ ଯାଇଥିଲା ମେନକାର । "ସତରେ, ମିଷ୍ଟର ରାମ !"

"ହଁ, କାଲି ଏ ନମ୍ବରକୁ ଡାଏଲ୍ କରିବନି । ମୋର ବ୍ୟକ୍ତିଗତ ଟେଲିଫୋନ୍ ନମ୍ବର ଟିପି ରଖ ।"

"ବହୁତ ବହୁତ ଧନ୍ୟବାଦ ।"
କିଛି ସମୟ ଧରି କାନ୍ଦ···ତା ପରେ ହସ···କି ଅଦ୍ଭୁତ ଝିଅ ଏଇ ମେନକା ।
ଦୁଇଦିନ ପରେ ସେ ଟେଲିଫୋନ୍ କଲା ରାମ ଦେଇଥିବା ନମ୍ବରକୁ ।

"ହ୍ୟାଲୋ, ଶୁଭ ମଧ୍ୟାହ୍ନ ।"
"ଶୁଭ ମଧ୍ୟାହ୍ନ ।"
"ବହୁତ ବ୍ୟସ୍ତ ?"

"ନା ; ତୁମ ପାଇଁ ବହୁତ ସମୟ ଅଛି ମିସ୍ ମେନକା ।"
"ମୋତେ କେବଳ ମେନକା କୁହ, ଏତେ ସମ୍ମାନସୂଚକ ଶବ୍ଦ କାହିଁକି ?"
ରାମ ହସିଲା । "ଠିକ୍ ଅଛି ।"

"ଗୋଟିଏ ନୂଆ ଖବର···ମୁଁ ତୁମକୁ ଗୋଟିଏ ଛୋଟିଆ ବାଟ ବତାଉଛି ।"
"କଣ ?"
"ତୁମେ ଧମୁଙ୍କର 'ଇଣ୍ଡିଆ ଟୁଡ଼େ' ଛବି ଦେଖିଛ କି ?"
"··············"
"ଠିକ୍ ମନେ ରଖିଛ ତାକୁ ।"
"··············"

"ଟେଥିରେ ସେ ପଥରର ନର୍ତ୍ତକୀ ପ୍ରତିମାକୁ ଦେଖାଇଛନ୍ତି ଓ ସେହି ପ୍ରତିମା ମଣିଷ ହୋଇ ନାଚୁଛି, ପରିଶେଷରେ······ ।"

"..............."

"ମିଷ୍ଟର ରାମ ! ମୁଁ ସେହି ନର୍ତ୍ତକୀ ।" ଧୀର ଗଳାରେ ସେ କହିଲା ।

ସେହି ମନୋହାରିଣୀ ଯୁବତୀ । ହେ ଭଗବାନ, ଭଗବାନ !

ମିଷ୍ଟର ରାମ ; ମୁଁ ତୁମକୁ ଦେଖିବାକୁ ଚାହେଁ । ମୋ ରାଣ, ତୁମକୁ ଦେଖିବା ପାଇଁ ମୋ ମନ ବଡ଼ ବ୍ୟାକୁଳ ।

ଗର୍ଭବତୀ ଅବସ୍ଥାରେ ମା ଯେମିତି ଭାବେ, ସନ୍ତାନ ଠିକ୍ ସେହିପରି ଆକୃତି ଧାରଣ କରେ । ଏହା ଗୁରୁଜନମାନେ କହୁଛନ୍ତି । ଯଦି ମୁଁ ତୁମକୁ ଦେଖେ, ମୁଁ ତୁମ କଥା ଚିନ୍ତୁଥିଲେ ଭାବେ, ପିଲାଟି ଠିକ୍ ତୁମ୍‌ଭଳି ହେବ ! ମୁଁ ତୁମକୁ ଥରେ ମାତ୍ର ଦେଖିବାକୁ ଚାହେଁ ; ମାତ୍ର ଥରେ । ମୋତେ ମନା କରନା । କେବଳ ତୁମ ପିଲା ପାଇଁ । ତୁମେ କ'ଣ ଦୟାକରି ଥରେ ପାଇଁ ଆସି ପାରିବନି ?"

"............... ।"

"ତୁମର ମନା କରିବା ମୁଁ ବେଶ୍ ବୁଝି ପାରୁଛି । ପାଞ୍ଚମିନିଟ୍, ମାତ୍ର ପାଞ୍ଚମିନିଟ୍ ମୋ ପାଖରେ ରହି ଚାଲିଯିବ । ଆମକୁ କେହି ଯେପରି ନ ଦେଖେ, ସେ କଥା ଦେଖିବା ମୋ ଦାୟିତ୍ୱ । ପ୍ଲିଜ୍ ।"

".............. ।"

"ମୁଁ ତୁମକୁ ମୋର ଫୋନ୍ ନମ୍ବର ଦେଉଛି । ଯଦି ତୁମେ ରାଜି ହୁଅ, ମୋତେ ଟେଲିଫୋନ୍ କର । ଦିନ ୧୦ଟା ଠାରୁ ଅପରାହ୍ଣ ୨ଟା ପର୍ଯ୍ୟନ୍ତ ମୋତେ ଟେଲିଫୋନ୍ କରିବନି । ଅନ୍ୟ ଯେ କୌଣସି ସମୟ, ମୋ ପାଇଁ ଉପଯୁକ୍ତ । ମୋତେ ହତାଶ କରନା ।"

ଟେଲିଫୋନ୍ ଲାଇନ୍ ବନ୍ଦ କଲା ମେନକା ।

ସପ୍ତାହେ ଚାଲିଗଲା ।

ମେନକା ପାଖରୁ କୌଣସି ଖବର ନାହିଁ ।

ବ୍ୟବସାୟରେ କୋଚିନ୍ ଓ ବାଙ୍ଗାଲୋର ଯିବା ଆସିବା କରି ରାଜ ଅସ୍ତବ୍ୟସ୍ତ । ସେ ଅନୁଭବ କରୁଥିଲା ମେନକାର ଅନୁରୋଧକୁ ସେ ଆଉ ଉପେକ୍ଷା କରି ପାରିବନି । ଶେଷରେ ସେ ତାକୁ ଦିନେ ୩ଟା ବେଳକୁ ଫୋନ୍ କଲା ।

"ହ୍ୟାଲୋ ।"

"ରାଜ କହୁଛି ।"

"..............."

"କିପରି ଅଛ ?"

"............... ।"

"ତୁମେ କାହିଁକି ମୋତେ ଟେଲିଫୋନ୍ କଲନି ।"

"............।"

"ରାଗିଛ ?"

"ମୁଁ କଣ ତୁମ ଉପରେ ରାଗିବି, ବା ତୁମଠୁ କିଛି ଲୁଚାଇବି ।"

ରାଜ ବିବ୍ରତ ହୋଇପଡ଼ିଲା ।

"ତୁମେ ମୋତେ ତୁମର ଠିକଣା ଦେଇନ । ତୁମ ପାଖକୁ କିପରି ଆସିଥାନ୍ତି ?"

ମେନକାକୁ ଲାଗିଲା ଯେପରି ସେ ଗଡ଼ ଜିଣି ଯାଇଛି !

ସେ ଚେଷ୍ଟା କରୁଥିଲା ଲାବଣ୍ୟକୁ ତା'ରି ପଇସାରେ ବୁଦ୍ଧି ଶିଖାଇବ । ସେ ଆନନ୍ଦ ଅନୁଭବ କରୁଥିଲା ରାଜର ମିଠା କଥା ଶୁଣି, ଯେଉଁ ଶିଶୁ ତା' ଗର୍ଭରେ ବଢ଼ୁଛି, ତା'ର ବାପର କଥା ଶୁଣି । ରାଜକୁ ଦେଖିବାକୁ, କଥା କହିବାକୁ, ପାଇବାକୁ ତା' ମନ ବ୍ୟାକୁଳ ହୋଇ ଉଠିଥିଲା । ସେ ଯେ ଲାବଣ୍ୟକୁ ଠକୁଛି ଏକଥା ଆଦୌ ଭାବୁ ନ ଥିଲା । ରାଜ ଯେତେବେଳେ ଠିକଣା ମାଗିଲା ସେହି ମୁହୂର୍ତ୍ତ ତା' ପାଇଁ ଥିଲା ବିଜୟର ସମୟ । ଖୁସିରେ ସେ ବତାଇ ଦେଇଥିଲା ଠିକଣା । ଆଉ ଆସିବାର ନିରାପଦ ସମୟ ମଧ୍ୟ ।

ସେଦିନ ରାତିରେ ଲାବଣ୍ୟକୁ ମିଟିଂର ଆଳ ଦେଖାଇ ରାଜ ନିଜର ଟୋୟୋଟା ଗାଡ଼ିଧରି ଚାଲି ଆସିଥିଲା କଳାହାଣ୍ଡି କଲୋନୀ ଅଭିମୁଖେ ଏବଂ ପହଞ୍ଚିଲା ମେନକା ପାଖରେ ।

"ଆସ୍ଥା, ମୁଁ ଗର୍ଭବତୀ । ମୁଁ ମୋର ପ୍ରେମିକକୁ ଦେଖିବାକୁ ବ୍ୟସ୍ତ । ସେ ଆଜି

ଆସୁଛନ୍ତି । ତୁ ଏକଥା ଅନ୍ୟ କାହାକୁ କହିବୁନି । ମୁଁ ତୋର ଝିଅ ପରି । ତୋତେ ଭିକ ମାଗୁଛି । କିଏ ବା ମୋ ନିକଟକୁ ଆସୁଛି ! ମୋ ପେଟରେ ବଢ଼ୁଥିବା ପିଲାର ବାପ । ମୁଁ ତାକୁ କେମିତି ମନା କରିଥାନ୍ତି ? ତୁ କାହାକୁ କହିବୁନି ।" ମେନକା ଗୃହକର୍ତ୍ରୀ ପାଖରେ କାକୁତି ମିନତି ହୋଇ ତାକୁ ରାଜି କରାଇ ପାରିଥିଲା ।

ରାମର ଦୃଷ୍ଟି ପଡ଼େ ମେନକା ଉପରେ । କି ସେ ରୂପ, କି ଆକର୍ଷଣୀ ତା' ଚାହାଣୀରେ । ନିଜର ସତ୍ତାକୁ ଭୁଲିଗଲା ରାମ । ଯୌବନ ଲହଡ଼ି ଖେଳୁଛି ଯେପରି ତା'ର ସମସ୍ତ ଶରୀରରେ । ବଡ଼ ବଡ଼ ଆଖି.. ...ଉନ୍ନତ ସ୍ତନଯୁଗଳ......ଆସନ୍ନ ମାତୃତ୍ୱ ତା'ର ସୌନ୍ଦର୍ଯ୍ୟକୁ ଯେପରି ଦ୍ୱିଗୁଣିତ କରି ଦେଇଥିଲା ।

ଏହି ସ୍ତ୍ରୀ ତା'ର ସନ୍ତାନକୁ ଗର୍ଭରେ ଧାରଣ କରିଛି, ତା'ରି ସନ୍ତାନ !!
ମେନକା ରାମ ହାତଧରି ଘର ଭିତରକୁ ନେଇ ଯାଇଥିଲା । ନୂଆ ବିବାହିତ ପତି ପତ୍ନୀଙ୍କର ତାହା ଥିଲା ଯେପରି ଗୃହ ପ୍ରବେଶ ।

ଏଣେ ଲାବଣ୍ୟ ତଦାରଖ କରି ଚାହିଁଥିଲା ଚାରି ଜଣ ଲୋକଙ୍କର କାମକୁ ।
କାନ୍ଥରେ ଇଟାଲି ହଳଦିଆ କାଗଜ...ସେଥିରେ ଛୋଟ ଛୋଟ ଫୁଲର ଚିହ୍ନ... ଦାମିକା କାର୍‌ପେଟ୍ । ମିକିମାଉସ୍ ଡୋନେଲ୍‌ଡ୍ ଡ୍ୟୁକ୍ସ ରଙ୍ଗରେ ପିଲାଙ୍କ ଖଟ୍‌ଟି ରଙ୍ଗାଯାଇଛି । ଗୋଟେ କୋଣରେ ଛ' ଫୁଟ ଉଚ୍ଚର ଧଳା ଭାଲୁର କଣ୍ଢେଇ । ସିଙ୍ଗାପୁରଠାରୁ ବିଶେଷ କାର୍ଯ୍ୟଯୋଗୁ ଅଣାହୋଇଛି । ରାତିରେ ତା' ଆଖିରେ ଆଲୁଅ ଖଞ୍ଜି ଦିଆଯାଇଛି; ମଧୁର ଓ ସ୍ୱଚ୍ଛ ଆଲୁଅ ଦେବାପାଇଁ । ଛାତରୁ ପ୍ଲାଷ୍ଟିକର ରଙ୍ଗ୍ ଗୁଡ଼ିକୁ ଓହଳାଇ ଦିଆଯାଇଛି । ପିଲାଙ୍କ ଲୁଗା ରଖିବାପାଇଁ ଅପର୍ଯ୍ୟାପ୍ତ ଡ୍ରେସର୍ । ରୁମ୍‌ର ରଙ୍ଗକୁ ଚାହିଁ ଗାଧୁଆ ଘର କାନ୍ଥରେ କାଗଜ ମଡ଼ାଯାଇଛି । ମାଟିଆରେ ଗୋଟିଏ ଠେକୁଆର ଚିହ୍ନ । ଟାଓ୍ୱାଲରେ ଚିଡ଼ିଆଖାନାର ବିଭିନ୍ନ ପଶୁମାନଙ୍କର ଚିହ୍ନ । ଗାଧୋଇବା କୁଣ୍ଡରେ ରଙ୍ଗରଙ୍ଗିଆ ରବର ଟ୍ୟୁବ୍ । ପିଲାଙ୍କ ପ୍ରସାଧନର ଅପର୍ଯ୍ୟାପ୍ତ ସରଞ୍ଜାମ ଲାବଣ୍ୟ ସଜାଡ଼ି ରଖୁଥିଲା ।

ନର୍ସରୀଟାକୁ ନିଜ ମନମୁତାବକ ସଜାଡ଼ୁଥିଲା ସେ ।

ଆଉ ମାତ୍ର କେତୋଟା ମାସ । ସବୁ ଜିନିଷ ଯେପରି ହେଉ ଠିକ୍‌ଠାକ୍ ହୋଇ ରହିଥିବ ନୂତନ ସନ୍ତାନର ଆଗମନ ପୂର୍ବରୁ ।

ସେ ଚାହୁଁଥିଲା ରାମ ତା'ର କାର୍ଯ୍ୟକୁ ଅନୁମୋଦନ କରୁ ।

ମାତ୍ର ଦେଖୁଥିଲା, କେତେ ମାସ ଧରି ରାମ ବର୍ମା ଭିନ୍ନ, ସବୁବେଳେ ସେ ଅନ୍ୟମନସ୍କ ।

କଣ ପାଇଁକି ?
କୌଣସି ବ୍ୟବସାୟିକ ଚିନ୍ତା ?
ବିଦେଶକୁ ଜିନିଷ ପଠାଇବାରେ କିଛି ଅସୁବିଧା ? ·
ସେ ରାମକୁ ଖାଦ୍ୟ ଛାଡ଼ି ଏବଂ ଚିନ୍ତାମଗ୍ନ ଦେଖି ଆତଙ୍କିତ ହୋଇ ପଡ଼ୁଥିଲା ।
"ଡାର୍ଲିଂ, କିଛି ଅସୁବିଧା ସୃଷ୍ଟି ହୋଇଛି କି ?" ସେ ବାରମ୍ବାର ତାକୁ ପଚାରୁଥିଲା ।
"ନା, କିଛି ନୁହେଁ, ଗୁଡ଼ି ସେ କଥା ।"
—କ'ଣ ସେହି ପିଲାଟି ପାଇଁ ସେ ବ୍ୟସ୍ତ ?

ମାତ୍ର ସେ ଭାବିନେଲା ତା' ସହିତ ଏ ବିଷୟରେ କଥା ନ ହେଲେ ଭଲ । ସେ ନିଜେ ମଧ୍ୟ କାହିଁକି କେଜାଣି ବିବ୍ରତ ଅନୁଭବ କରୁଥିଲା ।

କୌଣସିମତେ ଆଠ ମାସ ଚାଲିଗଲା । ଆଉ କେତୋଟା ମାସ । ସମସ୍ତ ଯେମିତି ଦ୍ରୁତ ଗତିରେ ଧାଉଁଛି । ପିଲାଟି ଘରକୁ ଆସିଯାଉ, ସବୁ ଠିକ୍ ହୋଇ ଗତାନୁଗତିକ ଭାବେ ଚାଲିବ !

ସନ୍ତାନ ।
ରାମର ସନ୍ତାନ ।
ନା, ନା!, ସେମାନଙ୍କର ସନ୍ତାନ !

ତା'ର ଚିନ୍ତା ଫଳବତୀ ହେବାକୁ ଯାଉଛି । ନାନା ସୁଖସ୍ୱପ୍ନ ଭିତରେ ବୁଡ଼ିରହି ସେ ରାମର ପରିବର୍ତ୍ତନକୁ ଗୁରୁତ୍ୱ ଦେଉ ନଥିଲା । ତା'ର ଅଂହଲଗ୍ନ ବ୍ୟବହାର ଓ ଚାଲିଚଳଣି ପ୍ରତି ଦୃଷ୍ଟି ଦେଇପାରୁ ନଥିଲା ସେ ।

ରାମ ! ଲବଣ୍ୟକୁ କେତେ ଭଲପାଏନା ! ସେ କେତେ ଦୁଃଖିତ ନହେବ ଯେତେବେଳେ ଜାଣିବ ତା'ର ସନ୍ତାନକୁ ଅନ୍ୟଜଣେ ସ୍ତ୍ରୀ ଲୋକ ତା' ଗର୍ଭରେ ଧାରଣ କରିଛି । ବୋଧହୁଏ, ସେଇଥିପାଇଁ ସେ ଚିନ୍ତିତ ।

ପିଲାଟିକୁ ଦେଖିସାରିବା ପରେ ସବୁ ଠିକ୍ ହୋଇଯିବ । କିଛିଦିନ ପରେ ସେ ବାସ୍ତବତାକୁ ଗ୍ରହଣ କରିନେବ ।

ମାତ୍ର ମେନକା ! ସେ ମଧ୍ୟ କେମିତି କେମିତି ପରିବର୍ତ୍ତିତ ହୋଇଗଲାଣି । କିଛିଦିନ ତଳେ ତା'ର ଥିବା ସରଳ ପ୍ରକୃତି, ତା' ଯେପରି ବଦଳି ଗଲାଣି ।

ଲାବଣ୍ୟକୁ ସେ ଆଉ ମାନୁନି ଏବଂ ନିଜ ଇଚ୍ଛା ମୁତାବକ କାର୍ଯ୍ୟ କରୁଛି । ସେ ବର୍ତ୍ତମାନ ବେଶି ସାହସିକା, ନିର୍ଭୀକା ଓ ଅବାଧ ହୋଇ ଉଠିଛି ଯେପରି । ତା ପୁଣି ଗୁରିମାସ ଠାରୁ, ସେ ବେଶୀ ବେଶୀ ଅବାଧ । ନିଜ ଜନ୍ମସ୍ଥାନକୁ ଯିବାକୁ ଚାହୁଁଛି, କୌଣସି ନା କୌଣସି କାରଣର ଆଳ ଦେଖାଇ । ବାଧ୍ୟ ହୋଇ ଲାବଣ୍ୟ ତାକୁ ଯିବାକୁ ଅନୁମତି ଦେଉଛି ।

ସେଦିନ ମେନକା ଗୋଟେ ଟେଲିଗ୍ରାମ ଦେଖାଇଲା ଲାବଣ୍ୟକୁ ; କହିଲା "ମୋ ମା ଖୁଚ୍ ବେମାର ।"

"ଟେଲିଗ୍ରାମ ? ତୋ ପାଇଁ ? ଏ ଠିକଣାରେ ? ସେମାନେ କେମିତି ଜାଣିଲେ ତୁ ଏଠାରେ ଅଛୁ ?" ଲାବଣ୍ୟ ପଚାରିଲା ।

"ମୁଁ ମୋ ଘରକୁ ଲେଖିଥିଲି ମୁଁ ବାହା ହେଉଛି ଏବଂ ତାଙ୍କୁ ଏଇ ଠିକଣାଟା ଦେଇଥିଲି ।"

"ତୁ କାହିଁକି ତୋର ରହିବା ଜାଗା ବତାଇଲୁ ? ତୋତେ ସାବଧାନ କରି ଦେଇ-ଥିଲି, କାହାକୁ ଏ ଜାଗା କଥା ନ କହିବା ପାଇଁ ।"

"ଜରୁରୀ ପରିସ୍ଥିତି ପାଇଁ । ମୋର ଲୋକମାନେ ଜାଣିବା ଦରକାର । ମୁଁ କେଉଁଠି ରହୁଛି । ଆପଣଙ୍କୁ ପଚାରେ, ଏ ପର୍ଯ୍ୟନ୍ତ କୌଣସି ଚିଠି ଆସିନି । ମୁଁ ନିଶ୍ଚୟ କରି କହୁଛି ।"

ଲାଞ୍ଚଖୋର ଆସ୍ତ୍ୱାଚି ସମ୍ମତିସୂଚକ ମୁଣ୍ଡ ହଲାଇଲା ।

ଲାବଣ୍ୟ ଦେଖିଲା ଟେଲିଗ୍ରାମ୍‌ଟି କଲିକତାରୁ ହିଁ ଆସିଛି ।

"କଲିକତାରେ ତୋର କ'ଣ କେହି ସମ୍ପର୍କୀୟ ଅଛନ୍ତି ? ଏ ଶାରଦା କିଏ ? ତାର ତୋ ସହିତ କ'ଣ ସମ୍ପର୍କ ?"

"ହେ ମୋର ଭଉଣୀ । ମୋର ସବୁ ସମ୍ପର୍କୀୟମାନେ କଲିକତାରେ ନାହାନ୍ତି । ମୋ ବାପା ମାଆ ଅଛନ୍ତି । ଭଉଣୀ ନିଶ୍ଚିତଭାବେ ଦିଲ୍ଲୀରୁ ଆସିଛି । ଏଥିରୁ ଜଣା ପଡ଼ୁଛି ବାପା ଏ ପର୍ଯ୍ୟନ୍ତ ମୋ ଉପରେ ରାଗିଛନ୍ତି । ହେ ବାପା, ମା ଲୋ ।"

ସେ ବଡ଼ ପାଟିରେ କାନ୍ଦିବାକୁ ଲାଗିଲା ।

ଲାବଣ୍ୟ ପଡ଼ିଲା ମହା ଦ୍ୱନ୍ଦରେ—ମେନକାକୁ କଲିକତା ପଠାଇବ ନା ନାହିଁ ।

ଯଦି ମେନକାର ମା'ଙ୍କୁ କିଛି ହୋଇଯାଏ ; ତେବେ ଜୀବନସାରା ସେ ଝିଅଟି ମା' ଠାରୁ ଅଲଗା ରହିଥିବା ହେତୁ ଅନୁତାପ କରିବ ।

ଧମ୍ମୁ ସହରରେ ନାହିଁ, ବମ୍ବେକୁ ଯାଇଛି । ଭାରତ ସରକାର ସୁଭାଷଚନ୍ଦ୍ର ବୋଷଙ୍କ ଜୀବନୀ ଉପରେ ଏକ ପ୍ରାମାଣିକ ଚଳଚ୍ଚିତ୍ର ପାଇଁ ତା ଉପରେ ଦାୟିତ୍ୱ ଦେଇଛନ୍ତି । ତାକୁ ଫେରିବାକୁ ତିନିମାସ ଲାଗିବ ।

ଅନ୍ୟ କୌଣସି ଉପାୟ ନ ଦେଖି, ସେ ତା ପରଦିନ ମେନକାକୁ ଉଡ଼ାଜାହାଜ ଯୋଗେ କଲିକତା ପଠାଇଲା ଏବଂ ସପ୍ତାହକ ଭିତରେ ଫେରି ଆସିବାକୁ ତାଗିଦ୍ କଲା । କଲିକତାର ଠିକଣା ମାଗିବାବେଳେ ମେନକା ତାକୁ ଦେଇଥିଲା ଗୋଟିଏ ପୋଷ୍ଟବକ୍ସ ନମ୍ବର ।

"କିଛି ଠିକ୍ ଆଡ୍ରେସ୍ ନାହିଁ ?"

"କଲିକତାରେ ଏସବୁ ସାଧାରଣ କଥା ।"

"ମେନକା! କ'ଣ ମିଛ କହୁଛି ?"

ସେ ତାକୁ ଠିକ୍ ଠିକଣା ଦେବାକୁ ପଛାଉଥିଲା କାହିଁକି ? "ଫୋନ୍ ନମ୍ବର ଅଛି କି ?"

"କୌଣସି ଫୋନ୍ ସେଠାରେ ନାହିଁ । ଆଦୌ ବ୍ୟସ୍ତ ହୁଅନା । ଗତ ଛ'ମାସ ଧରି ତୁମ ସନ୍ତାନକୁ ମୁଁ ମୋ ପେଟରେ ଧରିଛି । ମଝିରେ ଛାଡ଼ି କ'ଣ ଖସିଯିବି ! ମୁଁ ମୋର ପ୍ରତିଜ୍ଞା ରକ୍ଷା କରିବି ନିଶ୍ଚୟ । ମୁଁ ପହଞ୍ଚିବା ମାତ୍ରେ ଟେଲିଗ୍ରାମ କରିବି । ଚିଠି ପଠାଇବି । ଯଦି ସମ୍ଭବ ହୁଏ ; ତେବେ ଫୋନ୍ ମଧ୍ୟ କରିବି । ଆଉ ଅଧିକ କ'ଣ ?"

ମେନକା କଲିକତା ଯିବାର ଦିନକ ପୂର୍ବରୁ ରାମ ଲାବଣ୍ୟକୁ କହିଲା ଦିଲ୍ଲୀଠାରେ ବୈଦେଶିକ ବ୍ୟାପାର ବିଷୟରେ ତାର କେତେକ ଜରୁରୀ କାର୍ଯ୍ୟ ଅଛି ମାତ୍ର ଦିଲ୍ଲୀରେ ପହଞ୍ଚି ତାକୁ ଫୋନ୍ କଲା, "ମୁଁ ନେପାଳକୁ ହଠାତ୍ ଚାଲି ଯାଉଛି । ଆସିବାକୁ ଚାରିଦିନ ଲାଗିପାରେ ।" ମାତ୍ର ସେ ଜାଣି ନ ଥିଲା ରାମ କଲିକତାରେ ପହଞ୍ଚି ମେନକା ପହଞ୍ଚିବା ମାତ୍ରେ ତାକୁ ନେଇ ଦାର୍ଜିଲିଂ ଯିବ ।

ଏହା ଭିତରେ ଲାବଣ୍ୟ ତା ଅଫିସ୍‌ରୁ ପାଇଲା ଗୋଟେ ଖବର ।

"ମ୍ୟାନେଜିଂ ଡାଇରେକ୍ଟର କେବେ ଫେରୁଛନ୍ତି ? ଦିଲ୍ଲୀ ଅଫିସ୍ କହିଲା ସେ କଲିକତା ଚାଲି ଯାଇଛନ୍ତି । ଆମେ ତାଙ୍କୁ କେଉଁଠିକି ଯୋଗାଯୋଗ କରିବୁ ?"

"କଲିକତା ? ନା, ସେ ମୋତେ କହିଛନ୍ତି ନେପାଳ ଯାଉଛନ୍ତି ବୋଲି ।"

"ମ୍ୟାଡାମ୍, ଆମେ ଦୁଃଖିତ । ସେ ଆମକୁ କହିଥିଲେ, ନେପାଳ ଯାଇ ପାରନ୍ତି । ବୋଧହୁଏ ଦିଲ୍ଲୀ ଭୁଲ୍ ଖବର ଦେଇଛି ।" ସେକ୍ରେଟାରୀ କହିଲେ ।

ମେନକାର କୌଣସି ଖବର ନ ଥିଲା ! ଲାବଣ୍ୟ ରାଗରେ ଫାଟି ପଡୁଥିଲେ ବି ତାର କିଛି କରିବାର ନ ଥିଲା ।

ସେ କ'ଣ ବା କରି ପାରିବ ।
ଲେଟର୍ ବକ୍ସ ନମ୍ବର ନେଇ ସେ ତାକୁ ଏବେ କେମିତି ଖୋଜିବ ।

ଆଠଦିନ ପରେ ମେନକା ଆସି ପହଞ୍ଚିଲା କାନ୍ଦି କାନ୍ଦି । "ମା ମରିଗଲା, ଏଥିରେ କେମିତି ଚିଠି ଲେଖିଥାନ୍ତି ।"
"ତୋ ଲୋକମାନେ କ'ଣ ତୋର ଗର୍ଭାବସ୍ଥା ନେଇ କିଛି ପ୍ରଶ୍ନ କଲେ ?"

ମେନକା ମନା କରିଦେଲା କୌଣସି ଉତ୍ତର ଦେବାକୁ । "ତୁମେ ମୋତେ ତୁମ ପରିବାର ବିଷୟରେ କୌଣସି କଥା କହୁନା । ମାତ୍ର ମୋ ପରିବାର ବିଷୟରେ ଅପର୍ଯ୍ୟାପ୍ତ ପ୍ରଶ୍ନ ପଚାରି ଚାଲିଛ । ମୁଁ କାହିଁକି ଉତ୍ତର ଦେବି ?"

ଲାବଣ୍ୟ ତା କଥାରେ ତଟସ୍ଥ ହୋଇଗଲା ।

ମେନକା ଆସ୍ତେ ଆସ୍ତେ ଅବାଧ ହୋଇ ପଡ଼ୁଛି । ସେ ମୁହେଁ ମୁହେଁ ଜବାବ ଦେବାକୁ ଆରମ୍ଭ କରି ଦେଇଛି । ଏସବୁ କ'ଣ ? କ'ଣ ଘଟି ଚାଲିଛି ? ସାତମାସ ବେଳକୁ, ପୁଣି ଏକ ଟେଲିଗ୍ରାମ ।

"ମା'ର ଶ୍ରାଦ୍ଧକ୍ରିୟା ଗୁରୁ ତାରିଖ ଦିନ ହେବ । ଶୀଘ୍ର ଗୁରୁଦିନ ଏଠାରେ ରହିବାର ଯୋଜନା କରି ଆସି ପହଞ୍ଚ । ଶାରଦା ।"

ଏଥରକ ମେନକା ଦାର୍ଜି ଯିବାକୁ ଇଚ୍ଛା କଲା ।

"ମା ଦୁଇମାସ ହେଲା ମଲାଣି । ତୁମର ଲୋକମାନେ ବର୍ତ୍ତମାନ ଶ୍ରାଦ୍ଧକ୍ରିୟା କରୁଛନ୍ତି ? ମୁଁ ଆଦୌ ବିଶ୍ୱାସ କରି ପାରୁନ ।" ଲାବଣ୍ୟ କହିଲା ।

"ଆମ ସମ୍ପ୍ରଦାୟରେ ତାହା ହିଁ ପରମ୍ପରା ।"

"ତୁମର କେଉଁ ସମ୍ପ୍ରଦାୟ ।"

"ତୁମର ସେ ସବୁ ଜାଣିବାରେ କ'ଣ ଦରକାର ? ମୁଁ ନିଶ୍ଚିତ ଯିବ । ବାସ୍, ସେତିକି । ମୋର ମା'ର ଶେଷକୃତ୍ୟ ପାଇଁ ମୁଁ ନିଶ୍ଚିତ ଯିବ ।"

ଲାବଣ୍ୟ ନିଜକୁ ସଂଯତ କରିଦେଲା ।

ମାତ୍ର ଗୁରୁ ଦିନ । ଯାଉ ଏବେ ।

ଆଠ ମାସ ଆରମ୍ଭ ହେବାମାତ୍ରେ, ମେନକା ଆଉ କୁଆଡ଼େ ଯାଇ ପାରିବନି । ସେ ଅନ୍ୟ କୌଣସି ଯୋଜନା ଯିବାପାଇଁ କରି ପାରିବନି ।

ଲାବଣ୍ୟର ଚକ୍ଷୁ ଅନ୍ତରାଳରେ ଗୁମ ଲୁଚି ଲୁଚି ଦେଖା ସାକ୍ଷାତ କରେ ମେନକାକୁ । ଅତ୍ୟନ୍ତ ଚତୁରତା ସହ ମେନକା ସମ୍ଭବତ ଦାର୍ଜିଲିଂ ଓ ଦାର୍ଜି ଯାଏ । ବିଗୁଣି ଲାବଣ୍ୟ, ତା'ର ଚତୁରତା ବୁଝିନ୍ତା କେତେକେ । ସେମାନେ ତାକୁ ଠକି ପାର୍ବତ୍ୟ ଅଞ୍ଚଳରେ ସମସ୍ତ କଟାଉଛନ୍ତି, ଏହା ତା'ର କଳ୍ପନା ବାହାରେ ।

ପିଲାର ଦାୟିତ୍ୱ କେମିତି ନେବାକୁ ହେବ, ତାକୁ ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଦେଇ ବଢ଼ାଇବାକୁ ହେବ, ସେଥିପାଇଁ ସେ ଚିନ୍ତିତ । ସେ ପିଲାଙ୍କ ସମ୍ପର୍କିତ ବହି

ପଢ଼ିବାରେ ସମୟ କଟାଏ । ପିଲାଟିକୁ କେମିତି ପାଳିବ, ଯାହାର ଛନଛନିଆ ମୁହଁ ଦେଖିବାକୁ ତା'ର ଏତେ ଚେଷ୍ଟା !

ଶ୍ୟାମ ମେନକା ସେହି ଦିନଗୁଡ଼ିକରେ ସ୍ୱାମୀ ସ୍ତ୍ରୀ ପରି ପରସ୍ପରର ନିକଟ ହୁଅନ୍ତି । ଶରୀରରେ ଶରୀର ମିଶେ । ହୃଦୟ ଦିଆନିଆ ହୁଏ ।

× × ×

"ଆଉ ପନ୍ଦର ଦିନ ପରେ ପିଲାଟି ଆମର ହେବ ।" ଡାକ୍ତର କହନ୍ତି ମେନକାକୁ ପରୀକ୍ଷା କରି ।

ସେଦିନ ଅପରାହ୍ନରେ ଡାକ୍ତରଙ୍କ ଠାରୁ ଲାବଣ୍ୟ ପାଏ ଟେଲିଫୋନ୍ ।

"କୌଣସି ଅସୁବିଧା ?" ନିହାତି ସରଳ ଓ ସହଜ ଭାବରେ ପଚାରେ ଲାବଣ୍ୟ ।

"ନା, ଲାଭ । ମେନକା ଠିକ୍ ଅଛି । ଖୁବ୍ ସୁରୁଖୁରୁରେ ପ୍ରସବ ହେବ । କିନ୍ତୁ..."

"କ'ଣ ଡାକ୍ତର ?"

"ତୁମେ ମୋତେ କହିଥିଲ ମେନକା କେବଳ ଗୃହକର୍ତ୍ରୀଟି ସହିତ ରହୁଛି ? ଗୋଟିଏ ବୁଢ଼ୀ ସ୍ତ୍ରୀ ଲୋକ ?"

"ହଁ, ଡାକ୍ତର ।"

"କିନ୍ତୁ, ତୁମେ କ'ଣ ନିଶ୍ଚିତ ଯେ ପାଖଆଖରେ ଅନ୍ୟ କୌଣସି ପୁରୁଷ ଲୋକ ନାହିଁ ?"

ଡାକ୍ତରଙ୍କ ପ୍ରଶ୍ନ ଶୁଣି ଲାବଣ୍ୟ ଚମକି ପଡ଼ିଲା ।

"କ'ଣ କହୁଛନ୍ତି, ଏଭଳି ପ୍ରଶ୍ନ ପଚାରିବାର ଅର୍ଥ କଣ ?"

"ଲାଭ, ଏହାକୁ ସହଜ ଭାବରେ ଗ୍ରହଣ କର । ମେନକାକୁ ପରୀକ୍ଷା କରି ଦେଖିଲି, ତା'ର କୌଣସି ପୁରୁଷ ସହିତ ଶାରୀରିକ ସମ୍ପର୍କ ହୋଇଛି । ଆଗରୁ ଏଭଳି ମୋର ଦୁଇଥର ସନ୍ଦେହ ହୋଇଥିଲା । ତୁମେ କହିଥିଲ, ସେ ଏକା ବୁଢ଼ୀ ଗୃହକର୍ତ୍ରୀଟିଏ ସହିତ ରହୁଛି । ତେଣୁ ସେ କଥା ମୁଁ ଭୁଲି ଯାଇଥିଲି । ମୋର ହୁଏତ ସେତେବେଳେ ଭୁଲ ହୋଇଥାଇପାରେ; ମାତ୍ର ବର୍ତ୍ତମାନ ମୋର ସନ୍ଦେହ ସମ୍ପୂର୍ଣ୍ଣ ସତ୍ୟ । ତେବେ ଆଦୌ ବ୍ୟସ୍ତ ହୁଅନା । ମୋର ଦାୟିତ୍ୱ ଥିଲା ତୋତେ ଜଣାଇ ଦେବା । ଏହାକୁ ଭୁଲିଯାଅ ।"

ଲାବଣ୍ୟ କିଛି ଭାବି ନ ପାରି ଥରିବାକୁ ଆରମ୍ଭ କରି ଦେଇଥିଲା ।

ଏହା କ'ଣ ପ୍ରକୃତରେ ସତ୍ୟ !

ମାତ୍ର କେମିତି ।

ସେଦିନ ଅପରାହ୍ନରେ ଲାବଣ୍ୟ ଗୃହକର୍ତ୍ରୀକୁ ନେଇ ପରିବା କିଣିବାକୁ ବଜାରକୁ ଗଲା । ତାକୁ ବାରମ୍ବାର ମେନକା ପାଖକୁ କେହି ଆସୁଛି କି ବୋଲି ପ୍ରଶ୍ନ ସେ ପଚାରିଥିଲା । ଗୃହକର୍ତ୍ରୀଟି ମନା କରିଥିଲା । ଗୃହକର୍ତ୍ରୀ ମିଛ କହିଲା ! ଡାକ୍ତରାଣୀଙ୍କ କଥା ମିଛ ହୋଇ ନ ପାରେ ! ଏହା ନିଶ୍ଚିତ ।

ବିବ୍ରତରେ ମୁଣ୍ଡ ଘୂରାଇଗଲା ଲାବଣ୍ୟର । କିଏ ସେହି ପୁରୁଷ ନିଶ୍ଚିତ ରୂପେ କେହି ଜଣେ ଆସୁଛି ।

ତେବେ ମେନକା କ'ଣ ପୁରୁଷ ସାନ୍ନିଧ ବିନା ବର୍ଷେ ଗୋଟେ ରହି ପାରିଲାନି ?

ବୁଢ଼ୀ ଗୃହକର୍ତ୍ରୀଟିକୁ କ'ଣ ଲାଞ୍ଚ ଦିଆଯାଇଛି ?

ଓଃ, କେତେ ଭୟାନକ ଲୋକ ଏମାନେ । ନର୍କରେ ପଡ଼ନ୍ତୁ ଏମାନେ ।

ଲାବଣ୍ୟ ତକିଆରେ ମୁହଁ ଗୁଞ୍ଜି ଅସ୍ଥିର ମନରେ ସବୁକଥା କଳ୍ପନା କରିଥିଲା । ଗୃହକର୍ତ୍ରୀଟି ମେନକାକୁ ସବୁକଥା କହି ଦେଇଥାଏ ଏହା ଭିତରେ । ମେନକା ଟେଲିଫୋନ୍‌ରେ ରମକୁ କୁହେଁ, "ଘଟଣା ହୁଏତ ପ୍ରକଟ ହୋଇଯାଇପାରେ । ତୁମକୁ ଚଞ୍ଚଳ ଏ ବିଷୟରେ କିଛି ସିଦ୍ଧାନ୍ତ ନେବାକୁ ହେବ ।"

ସପ୍ତାହେ ଗତ ହୋଇଯାଏ । ଲାବଣ୍ୟ ମାତ୍ର ଥରୁଟିଏ ଭେଟିଥାଏ ମେନକାକୁ । ତା'ର ଦେହ କଥା ପଚାରେ, ଫୋନ୍‌ର ଚାବିକାଠି ଦେଇ କହେ, "ତୋର ଯେତେବେଳେ ଯନ୍ତ୍ରଣା ହେବ, ମୋତେ ଫୋନ୍ କରି କହିବୁ ।"

ତା'ର କିଛିଦିନ ପରେ ।

ଲାବଣ୍ୟ ଭାବେ ତା'ର ଯନ୍ତ୍ରଣାର ଦିନଗୁଡ଼ିକ ସରିଆସିଲା । କେତେ କଠିନ ପରିଶ୍ରମରେ ବର୍ଷଟିଏ ସେ କଟାଇ ନାହିଁ !

ସେଦିନ ସନ୍ଧ୍ୟାରେ ଧୀମୁ ଫେରି ଆସିଥାଏ ବର୍ମାରୁ । ସେ ତାକୁ ଫୋନ୍ କରି ପଚାରେ, "କେମିତି ଚାଲିଛି ସବୁ; ନିର୍ଦ୍ଦିଷ୍ଟ ତାରିଖ କେବେ ?"

ତା'ର ସ୍ୱର ଶୁଣି ଲାବଣ୍ୟ ପିଣ୍ଡରେ ପ୍ରାଣ ଆସେ । "ମୁଁ ତୋତେ ବହୁତ ମନେ ପକାଉଥିଲି । ତୁ ଚଞ୍ଚଳ ଏଠିକି ଆସ ।"

"ଠିକ୍ ଅଛି । ମୁଁ ଯାଇ ଅଧଘଣ୍ଟାଏ ଭିତରେ ପହଞ୍ଚୁଛି ।"

ଧୀମୁ ଆସି ପହଞ୍ଚେ । ସେଯାଏଁ ସ୍ୱନ ଅଫିସରୁ ଫେରି ନଥାଏ । ସେମାନେ ପଢ଼ିବା ବଖରାରେ ବସିଲେ ।

ଲାବଣ୍ୟ ଗୋଟି ଗୋଟି କହିଯାଏ ସବୁକଥା । ମେନକାର ଦୁଇ ଥର ଅନ୍ୟ ସହରକୁ ଯିବା, ତା'ର ବିଶୃଙ୍ଖଳ ଆଚରଣ ଏବଂ ସର୍ବଶେଷରେ ଡାକ୍ତରଙ୍କ ସନ୍ଦେହ ।

ଧୀମୁ ମନକୁ ମନ ହ୍ୱିସିଲ ମାରି କହିଲା, "ଯଦି ଆମେ ମେନକାର ଅତୀତ ଜୀବନକୁ ଦେଖିବା, ତା'ର ପାରିପାର୍ଶ୍ୱିକ ପରିବେଶକୁ ଆଲୋଚନା କରିବା, ତା'ର ସାମାଜିକ ସ୍ଥିତିକୁ ଲକ୍ଷ୍ୟଦେବା, ତେବେ ଏଥିପାଇଁ ଆଦୌ ବ୍ୟସ୍ତ ହେବା ଉଚିତ ନୁହେଁ । ମୁଁ ଭାବିଥିଲି ସେ ବୋଧହୁଏ ଟିକିଏ ଭିନ୍ନ ।ମାତ୍ର ଗୋଷ୍ଠୀର ପ୍ରଭାବରୁ କେହି ମୁକ୍ତ ନୁହେଁ । ଆଉ ମାତ୍ର ଅଳ୍ପଦିନ । ତାକୁ ଟଙ୍କା ପଇସା ଦେଇ ବିଦା କରିଦେଲେ ଗଲା । ତା'ପରେ ଏ ଘଟଣାଗୁଡ଼ାକ ସବୁ ସ୍ୱପ୍ନପରି ଲାଗିବ । ସବୁ ଭୁଲିଯାଅ, ତା'ର ଅବାଧ୍ୟତା, ଗୃହକର୍ତ୍ରୀକୁ ଲାଞ୍ଚଦେଇ ବଶକରିବା ଇତ୍ୟାଦି, କଥାକୁ ଆଉ ଜୋର ଦେଇ ଭାବିବା ଦରକାର ନାହିଁ ।

ଲାବଣ୍ୟ ମନରେ ଦମ୍ଭ ଦେଖାଗଲା । ଆଉ ମାତ୍ର ସପ୍ତାହେ......।
ବିବ୍ରତ ହେବାର କୌଣସି କାରଣ ନାହିଁ ।
"ଟଙ୍କା ତାକୁ ଦେବାକୁ ପ୍ରସ୍ତୁତ କରିଛୁ ତ ? ଚେକ୍ ଆକାରରେ ନୁହେଁ ।"

"ସବୁ ଠିକ୍ ଅଛି । ସେ ଲୁଗାପଟା ନେଇଯାଉ । ପିଲା ଜନ୍ମ ହେଲା ମାତ୍ରେ ବୋତଲ କ୍ଷୀର ଖାଇ ବଞ୍ଚିବ । ନଅ ଦିନ ପରେ ଆମେ ପିଲାକୁ ଘରକୁ ଆଣିବା । ମାତ୍ର ମୋତେ ବଡ଼ ଭୟ ଲାଗୁଛି । ମୁଁ ଜାଣେନା କାହିଁକି ? ସବୁ କ'ଣ ଠିକ୍ ଠିକ୍ ହେବ ? ମୁଁ ଏ ବିଷୟରେ ରମା ସହିତ କଥା ହେବାକୁ ଇଚ୍ଛାକରୁଛି ମାତ୍ର ସେ

ଯେପରି ମୋ ଠାରୁ କ୍ରମଶଃ ଦୂରେଇ ଯାଉଛୁ । ମୁଁ ନିହାତି ଏକୁଟିଆ ଅନୁଭବ କରୁଛୁ । ଧମୁ, ତୁମେ ମୋତେ କୁହ, ସବୁ କ'ଣ ଠିକ୍ ଠିକ୍ ହେବ ?"

ଧୈର୍ଯ୍ୟଚ୍ୟୁତ ହୋଇ ସେ କାନ୍ଦିବାକୁ ଲାଗିଲା ।

ଲାବଣ୍ୟର ଏ ନୂତନ ଦୁର୍ବଳତା ଦେଖି ଆଶ୍ଚର୍ଯ୍ୟ ହେଉଥିଲା ଧମୁ ।

ଲାଭ ! ଅଳ୍ପ ମାତ୍ରାରେ ଭାବପ୍ରବଣ ହୋଇ ମନର ଭାରସାମ୍ୟ ତୁ ହରାଇଛୁ । ତୋତେ ପ୍ରଥମ କରି ମୁଁ ଏପରି ଦେଖୁଛୁ । ବର୍ଷେଟାଯାଏ ସବୁ ଠିକ୍‌ଠାକ୍ ଗଲା । ଆଉ କେତେ ଦିନ । ନିଜକୁ ସଂଯତ କର । ଚାଲ, ଯାଇ ଦେଖି ଆସିବା ।

"ବର୍ତ୍ତମାନ ?"

ସାଧାରଣତଃ ରାମ ଫେରିବାବେଳେ ଲାବଣ୍ୟ ଘରେ ଥାଏ । ମାତ୍ର ସେଦିନ ଧମୁ ସହିତ ସେ ତା କାର୍‌ରେ ବାହାରିଗଲା ।

ଆଡ୍ଡାୟାର ଦେଇ ଗଲାବେଳେ ରାମର 'ଟୋୟୋଟୋ' ଅନ୍ୟ ପଟରୁ ଆସୁଥିବା ସେମାନେ ଦେଖିଲେ । ରାମ ? ଏ ସମୟରେ ? ଏଠାରେ ?

ଗାଡ଼ିର ଗତି ବନ୍ଦ କଲା ରାମ । ସେ ଯେପରି ଉତ୍ତେଜିତ ହୋଇ ପଡ଼ିଥିବାର ଦେଖାଗଲା ।

"ହ୍ୟାଲୋ ଧମୁ ! କେବେ ଫେରିଲୁ ?"

ଧମୁ ଲାବଣ୍ୟକୁ ଚାହିଁଲା ।

"ରାମ ! ଏଆଡ଼େ କିପରି ?" ଲାବଣ୍ୟ ପଚାରିଲା ।

କାରଖାନା ପାଇଁ ଏଠାରେ ପଚିଶ ଏକର ଜମି ମିଳୁଛି । ମହାବଲୀପୁରମ୍ ରାସ୍ତାରେ । ଦେଖିବାକୁ ଆସିଥିଲି । ପସନ୍ଦ ହେଲାନି ।

ଧମୁ ବୁଝି ପାରିଲା ରାମ ମିଛ କହୁଛି । ତା ନିକଟରେ ଏପରି ଶ୍ରେଷ୍ଠ ଶ୍ରେଷ୍ଠ କାମ କରିବାକୁ ବହୁ ଲୋକ ଅଛନ୍ତି । ସେ କୋଟି କୋଟି ଟଙ୍କା କାରବାରର ମ୍ୟାନେଜିଂ ଡାଇରେକ୍‌ଟର । ଏଭଳି ଶ୍ରେଷ୍ଠ କାମ ପାଇଁ ସେ କାହିଁକି ଆସିବ ।

"ମୋତେ ଅଫିସ୍ ଯିବାକୁ ହେବ । ପରେ ଦେଖା । ବାଏ୍ ଲଭ !"
ଏହା କହି ରାମ ଗାଡ଼ି ଷ୍ଟାର୍ଟ କରି ଚାଲିଗଲା ।

"ଝିଅ ସ୍କୁଲ କଥା ଥାଏ ପୂର୍ବରୁ ଏଥର କୋଉଁ ପଶୁର ଦେଇଥାନ୍ତା ! ଯଦି ସେ ପଶୁର-ଥାନ୍ତା, କ ଉତ୍ତର ଦେଇଥାନ୍ତେ ! ଭାଗ୍ୟକୁ ରକ୍ଷା ମିଳିଗଲା ।"

ଲଭର ଏପ୍ରକାର ସରଳ ସ୍ୱଭାବ ଦେଖି ମନେ ମନେ ହସିଲା ଧମୁ । ସେ ଆଶଙ୍କା କଲା ଯେପରି କିଛି ଅପ୍ରତ୍ୟାଶିତ ଘଟଣା ଘଟିବାକୁ ଯାଉଛି ।

× × ×

ସେଦିନ ସନ୍ଧ୍ୟାବେଳ । ହଠାତ୍ ରାଜେଶ୍ୱରୀର ଫୋନ୍ । ମେନକା ଗର୍ଭଯନ୍ତ୍ରଣାରେ ଅସୁସ୍ଥ ।

ଲାବଣ୍ୟ ତତ୍‌କ୍ଷଣାତ ଡାକ୍ତରଙ୍କୁ ଫୋନ୍ କଲା । ଧମୁକୁ ଚେଷ୍ଟା କରି ଫୋନ୍‌ରେ ପାଇଲାନି ।

ନିଜର ଗାଡ଼ି ନେଇ ପହଞ୍ଚିଲା କଲାକ୍ଷେତ୍ର କଲୋନୀରେ ।
ମେନକା ଓ ରାଜେଶ୍ୱରୀ ପ୍ରସ୍ତୁତ ଥିଲେ ।

ତାକୁ ଡାକ୍ତରଖାନାକୁ ନିଆଗଲା । ଡାକ୍ତର କହିଲେ ପ୍ରକୃତ ଗର୍ଭଯନ୍ତ୍ରଣା ହେବାକୁ କିଛି ସମୟ ଦରକାର ।

ଲାଭି ଅସ୍ଥିର...ସେ ବାରଣ୍ଡାର ଏପାଖ ସେପାଖ ଚାଲିବାକୁ ଲାଗିଲା ।
ପ୍ରସବ କ'ଣ ଠିକ୍ ଭାବରେ ହେବ ?
ପୁଅ ନା ଝିଅ ?
ସେ କ'ଣ ରାମ ନା ମେନକା ପରି ହେବ ?
ଯଦି ପୁଅ ହୁଏ, ତେବେ ବାପ ପରି କେତେ ଆଶ୍ଚର୍ଯ୍ୟଜନକ ନ ହେବ ସତେ ।

"ମୋ ହାଁକୁ ଗୋଟେ ସିଂହ । ମୋର ଅଢ ଦମ୍ଭରେ ଛଅଟା ନାତ ନାତୁଣୀ ଦରକାର । ସବୁଗୁଡ଼ାକ ସିଂହଛୁଆ । ତାପରେ ସବୁଗୁଡ଼ାକ ସୁନ୍ଦର ଓ ସୁଠାମ୍ ।"
ବାପା ଏକଥା କହୁଥିଲେ । ଲାବଣ୍ୟ ତାଙ୍କ କଥା ମନେ ରଖିଛି ।

ଠିକ୍ ଅଛୁ । ରାମ ଭଲ ହେଲେ ହେଲା ।
ଠିକ୍ ରାମ ପରି । ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ।

ଲାଭି ଅସଂଖ୍ୟ ଚିନ୍ତା ନେଇ ଏ ମୁଣ୍ଡରୁ ସେ ମୁଣ୍ଡକୁ ହେଉଥିବା ବେଳେ ହଠାତ୍ ତାର ଗତି ସ୍ଥିର ହୋଇଯାଏ ।

ସେ ଦେଖେ କିଛି ଦୂରରେ ରାମ ତାର ଟୋୟୋଟାକୁ ଆଣି ପାର୍କିଂ କଲା ।
ରାମ ?
ସେ ଏଠାରେ କିପରି ? ସବୁ ଜାଗା ଛାଡ଼ି ଏଠି !
"ସେ ଜହର ଅଛୁ ଲାଭି !" ଉତ୍ତେଜିତ ସ୍ୱରରେ ପଚାରେ ରାମ ।
"ସେ ? କାହା କଥା ପଚାରୁଛ ? ମେନକା ? ମେନକା ?"

ରାମ ରାଜରାଣୀକୁ ଦୁଆର ମୁହଁରେ ଦେଖେ । ଧାଇଁଯାଏ ତା ନିକଟକୁ ସେ । ଲାଭି ତା ପଛେ ପଛେ ।

ମେନକା ଯନ୍ତ୍ରଣାରେ ଛଟପଟ ହେଉଥିବା ଦେଖି ତା ମନ ଦବିଯାଏ ।

"ରାମ ! ତୁମେ ଆସିଛ ! ଯନ୍ତ୍ରଣା ସହ୍ୟ କରି ହେଉନି ।" ଲୁହଧାର ବହି ଚାଲେ ମେନକା ଆଖିରୁ ।

ରାମ କୋଳକରି ପକାଏ ମେନକାକୁ । ଲାବଣ୍ୟ ଚାହିଁଥାଏ ଅପଲକ ନୟନରେ ! କଣ ସବୁ ସେ ଦେଖୁଛି !

"କାନ୍ଦନା, ତୋର ପାଇଁ ମୁଁ ଦୁଃଖିତ । ସବୁ ଠିକ୍ ହୋଇଯିବ ।"
ଲାବଣ୍ୟ ପାଟିରୁ ବାକ୍ୟ ସ୍ଫୁରୁ ନ ଥାଏ ।
ସେ ତା' ଆଖିକୁ ବିଶ୍ୱାସ କରି ପାରେନା ।

ଅତୀତର ସେହି ଘଟଣାବଳୀ—ଡାକ୍ତରଙ୍କ ସନ୍ଦେହ, ରାଜରାଣୀର ମିଛ କହିବା, ଅଣ୍ଡେୟାର ପାଖରେ ରାମକୁ ଦେଖିବା, ଅତ୍ୟନ୍ତ ଆଗ୍ରହର ସହିତ ମେନକାର କଥାବାର୍ତ୍ତା, ତା' ଆଦେଶକୁ ଅମାନ୍ୟ କରିବା, କଲିକତା ଓ ଦିଲ୍ଲୀ ଯିବା, ସେ ସମ୍ବନ୍ଧରେ ରାମର ଅନୁପସ୍ଥିତ, ଦିଲ୍ଲୀରୁ ଟେଲିଫୋନ୍ ରାତିରେ ସବୁଦିନେ ବିଭିନ୍ନ

ପାର୍କିକୁ ଯାଇ ରାମ ଡେଣରେ ଫେରିବା ଇତ୍ୟାଦି···ଇତ୍ୟାଦି···

ହଠାତ୍ ତା' ଆଖିରେ ସବୁ ଘଟଣାଗୁଡ଼ାକ ଯେପରି ବସ୍ତୁଛନ୍ନ ହୋଇ ପଡ଼ିଗଲା ।

ନିର୍ବାକ ଓ ନିଷ୍ପନ୍ଦ ଦେହ, ବାକ୍‌ଶୂନ୍ୟ ଭାବରେ କେବଳ ଠିଆ ହୋଇଥିଲା ।

"ଲାବଣ୍ୟକୁ ଦୟା କରି ସତକଥା କୁହ । ମୁଁ ଶାନ୍ତିରେ ଅପରେସନ୍ ଥିଏଟର ଭିତରକୁ ଯାଇପାରିବି । ରାମ, ତୁମେ ତାଙ୍କୁ ତୁମର ସିଦ୍ଧାନ୍ତ ଜଣାଇ ଦିଅ । ଅଯଥା ଡରନା । କୁହ, କୁହନା ।" ମେନକା ତା'ର ହାତଧରି ଯେପରି ଭିକ ମାଗୁଥିଲା ।

ରାମର ଲାବଣ୍ୟ ମୁହଁକୁ ଚାହିଁବାର ସାହାସ ନ ଥିଲା ।

"ଦୟାକରି ତାଙ୍କୁ କୁହ ।" ପୁଣି ଅନୁରୋଧ କଲା ମେନକା ।

"ଲାଭ, ତୁମେ ବୁଝୁକରୁ ଜାଣି ପାରିବଣି । ତୁମେ ବୁଦ୍ଧିମତୀ । ପିଲା ଜନ୍ମହେବା ପରେ ମେନକାକୁ ଦୂରକୁ ପଠାଇବାନି । ସେ ମଧ୍ୟ ଆମ ସହିତ ରହିବ । ମୋତେ ଦୟାକର, ପ୍ଲିଜ୍ ! ମୋତେ ବୁଝିବାକୁ ଚେଷ୍ଟାକର ।"

ସେ ଅତ୍ୟନ୍ତ ନମ୍ର ଓ କାକୁତ ମିନତି ସ୍ୱରରେ ମେନକାକୁ ଚାହିଁ ସବୁକଥା କହୁଥିଲା; ନିଜ ସ୍ତ୍ରୀକୁ ଚାହିଁବାକୁ ତାକୁ ଭୟ ଲାଗୁଥିଲା ଯେପରି ।

ଲାବଣ୍ୟ ଏ ଅପରେ ଛାଣୁ ପାଲଟି ଯାଇଥିଲା । ରାମ ମେନକା କୋଳରେ ନିଜକୁ ଲୁଚାଇ ଦେଇଥିଲା ।

ଆଉ ମୁହୂର୍ତ୍ତେ ମାତ୍ର ସେଠାରେ ଛିଡ଼ାହେବାର ଧୈର୍ଯ୍ୟ ନରଖି, ଲାବଣ୍ୟ ଏକା ନିଃଶ୍ୱାସରେ ସେଠାରୁ ଆସି ପହଞ୍ଚିଲା ତା' କାର ପାଖରେ । ଷ୍ଟିଅରିଂକୁ ଜୋରରେ ଠେଲିଦେଇ, ଆକ୍‌ସିଲେଟରକୁ ଜୋରରେ ଚାପ ଦେବାଦ୍ୱାରା ଗାଡ଼ିଟା ଘୁଁ ଘୁଁ ହୋଇ ଜୋରରେ ଚାଲିବାକୁ ଆରମ୍ଭ କରିଦେଲା ।

ରାମର ସେହି ପୁରୁଣା କଥାଗୁଡ଼ାକ,···"ତୁ ମୋ ନିକଟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ, ଏ ସଂସାରରେ ସବୁଠାରୁ ପ୍ରିୟ," ତା' କାନରେ ଗୁଞ୍ଜରିତ ହୋଇ ଉଠୁଥିଲା ।

ସେ ସେଦିନ କ'ଣ କହୁଥିଲା—ଯେଉଁଦିନ ଲାବଣ୍ୟ ତାକୁ ଛାଡ଼ପତ୍ର ଦେଇ ବିବାହ କରିବାପାଇଁ ଭିକ୍ଷା ମାଗିଥିଲା ?

"ସନ୍ତାନକୁ ଗୋଳିମାର, ମୋର ଦର୍କାର ତୁ, ପୁଅ ନୁହେଁ," ସେ ସେଇଆ କହି-ଥିଲାକି ?

ସେ କହିଥିଲା, "ନା, କୌଣସି ସନ୍ତାନ ତୋ ଠାରୁ ମୋ ପାଇଁ ମୂଲ୍ୟବାନ ନୁହେଁ, ଲାଭି" ଏହା କ'ଣ ସେ କହି ନଥିଲା ?

ଏ କ'ଣ ହେଇ ରାମ ତୁ ଯେ ଏହିକଥା କହିଥିଲା ?

କେମିତ ?

"ସେ ଆମ ହଇତ ରହୁ……।"

"କପର ଭାବରେ ? ରାମର ରକ୍ଷିତା ଭାବେ ନା ଦ୍ୱିତୀୟା ପତ୍ନୀଭାବେ ?"

ତା' ପରବର୍ତ୍ତିରେ ରାମ କହିପାରିଥାନ୍ତା, "ମୁଁ ଏଇ ଝିଅଟିକୁ ଭଲପାଏ । ମୁଁ ତାକୁ ବାହାହେବାକୁ ଇଚ୍ଛାକରେ ।"—ଜଣେ ଗୁଣୀ ଓ ବ୍ୟକ୍ତିତ୍ୱ ଥିବା ଲୋକ ଏହାହିଁ କହିଥାନ୍ତା !

କ ପ୍ରତାରଣା ଶେଷରେ !

ସେଦନ ସେ କହିଥିଲା, "ସେ ସନ୍ତାନକୁ ଗୋଳିମାର । ତୁ ମୋ ପାଇଁ ବେଶୀ ମହତ୍ତ୍ୱପୂର୍ଣ୍ଣ ।" ସେତେବେଳେ ସେ ପିତୃତ୍ୱ କ'ଣ ଜାଣିବାର ସୁଯୋଗ ପାଇ ନ ଥିଲା । କିନ୍ତୁ ଆଜ ?

ଲାବଣ୍ୟ ଆଖିରେ ଲୁହର ଶ୍ରାବଣ ଧାର ।

କାହିଁକି ରାମର ସାହସ ହେଲାନି ଏତିକି କହିବାକୁ, "ଲାଭି ! ମୁଁ ତୋତେ ଛାଡ଼ପତ୍ର ଦେବାକୁ ଚାହେଁ, ମୁଁ ଏଇ ଝିଅଟିକୁ ବାହାହେବାକୁ ଇଚ୍ଛା କରେ । କାରଣ ସେ ମୋତେ ପିତୃତ୍ୱ ଗୌରବରେ ମଣ୍ଡିତ କରିଛି ।"

ସେ କ'ଣ ତା' ଚାକିରି ଚାଲିଯିବାର ଭୟ କରୁଥିଲା ? ନା ସମ୍ପତ୍ତିର ମୋହ ?

ରାମ କ'ଣ ଏମିତ ଭୀରୁ ? ରାମ କ'ଣ ଏଭଳି ଗୋଟେ କାପୁରୁଷ ?

ସେ ଘରେ ପହଞ୍ଚି ଦୌଡ଼ି ଯାଇଥିଲା ଫୋନ୍ ନିକଟକୁ ।

ତା' ମନ ଆଗ୍ନେୟଗିରିର ଉତ୍କ୍ଷିପ୍ତ ଲାଭାପରି ପ୍ରଜ୍ଜ୍ୱଳିତ ହେଉଥିଲ ।

ହୃଦୟ ଭାଙ୍ଗି ଯାଇଥିଲା । ଚୂନା ହୋଇ ଯାଇଥିଲ ତା'ର ମନ ।

ସେ ଫୋନ୍ କଲା ଧମୁକୁ ।

ଧମୁ·····ଧମୁ······କାନ୍ଦୁଥିଲା ଲାଭି ।

"ଲାଭି ! କ'ଣ ହେଲା ?"

"ଧମୁ ! ଏ ସିଂହ ନୁହେଁ । ସେ ଗୋଟାଏ ଗାଈ । ମୁଁ ସିଂହଛୁଆ ଗୃହିଁଥିଲି । ତା ଛଡ଼ା ଅନ୍ୟ କିଛି ନୁହେଁ । ମୋ ବାପା ଶେଷ ସମୟ ପର୍ଯ୍ୟନ୍ତ ସିଂହ ଛୁଆପରି ନାତନାତୁଣୀ ପାଇବାକୁ ବ୍ୟାକୁଳ ଥିଲେ, ମାତ୍ର ସେତ ଠେକୁଆଟିଏ ।"

"ନା, ନା, ମୁଁ ଠେକୁଆ, କି ଠେକୁଆ ଛୁଆ ଆବଶ୍ୟକ କରେନା । ଧମ୍ ! ଦୟାକରି ମୋ ଓକିଲଙ୍କୁ ଡାକ । ତାଙ୍କୁ କହ ମୁଁ ଛାଡ଼ପତ୍ର ଦେବାକୁ ଗୃହେଁ—ଚଞ୍ଚଳ ଆ··· ଧ···ଅ···ମ୍ ।

ଅଖିରେ ଅଖିଏ ଲୁହ । ରୁଦ୍ଧ ହୋଇଯାଇଥିଲା ଲାବଣ୍ୟର କଣ୍ଠସ୍ୱର । ଛାଡ଼ ଦେଇଥିବା ଟେଲିଫୋନ୍‌ଟା ଝୁଲୁଥିଲା ପବନରେ ।

ଟିକେ କାଟିଲାପରେ ତଳେ ପଡ଼ ବଡ଼ ପାଟିରେ କାନ୍ଦୁଥିଲା ଲାବଣ୍ୟ ।

